ବିଶ୍ୱସାହିତ୍ୟ ଗ୍ରନ୍ଥମାଳା

# ସେରଲକ୍ ହୋମ୍ସ କାହାଣୀ

(ପଞ୍ଚମ ଖଣ୍ଡ)

ମୂଳ ରଚନା
ସାର୍ ଆର୍ଥର୍ କୋନାନ୍‌ଡୟେଲ୍

ଅନୁବାଦ :
ଶ୍ରୀ ଦିବାକର ପାଣି
ବି. ଏ. (ଅନର୍ସ), ବି. ଇଡ଼ି

ଗ୍ରନ୍ଥମନ୍ଦିର

# ସୂଚୀପତ୍ର



—

## ପଦେଅଧେ

ଏଡ଼ିନ୍‌ବର୍ଗ ବିଶ୍ୱବିଦ୍ୟାଳୟରୁ ଡାକ୍ତରୀ ପାସ୍ କଲା ପରେ ସାର୍ ଆର୍ଥର କୋନାନ୍‌ଡ଼ୟଲ୍ ସାଉଥ୍‌ସିରେ ଡାକ୍ତରୀ ବ୍ୟବସାୟ ଆରମ୍ଭ କଲେ । ଏଇଠି ରୋଗୀମାନଙ୍କୁ ଅପେକ୍ଷା କରି ବସିଥିବା ସମୟରେ ସେ ତାଙ୍କର ଲେଖା ଆରମ୍ଭ କଲେ । ଖୁବ୍ ଶୀଘ୍ର ସେ ଜଣେ ପ୍ରଖ୍ୟାତ ଲେଖକ ହୋଇଗଲେ । ତାଙ୍କ ଲେଖା ଭିତରେ ସେର୍‌ଲକ୍ ହୋମ୍‌ସ ଚରିତ୍ରର ଅବତାରଣା ଶ୍ରେଷ୍ଠ କୃତି । ଏକଦା ସେ ସେର୍‌ଲକ୍ ହୋମ୍‌ସ ଚରିତ୍ରର ପରିସମାପ୍ତି ପାଇଁ ହୋମ୍‌ସଙ୍କୁ ମୃତ୍ୟୁମୁଖରେ ପକାଇଦେଲେ; କିନ୍ତୁ ପାଠକ ସେର୍‌ଲକ୍ ହୋମ୍‌ସଙ୍କୁ ହରାଇବାକୁ ରାଜିନଥିଲେ । ସେମାନଙ୍କ ଚାପରେ କୋନାନ୍‌ଡ଼ଏଲ୍‌ଙ୍କୁ ପୁଣି ସେର୍‌ଲକ୍ ହୋମ୍‌ସଙ୍କୁ ଫେରାଇ ଆଣିବାକୁ ପଡ଼ିଥିଲା ।

ଅନୁବାଦକ

# ରିଗେଟ୍‌ର ସମ୍ଭ୍ରାନ୍ତ ବଂଶ

ଏପ୍ରିଲ ମାସ ୧୪ ତାରିଖ ଦିନ ମୁଁ ଲିଅନ୍‌ସରୁ ଗୋଟିଏ ଟେଲିଗ୍ରାମ୍ ପାଇଲି । ଖବରଟା ହେଲା ମୋ ବନ୍ଧୁ ସେରଲକ୍ ହୋମ୍‌ସ ଡୁଲଙ୍ଗ ହୋଟେଲରେ ବେମାର ପଡ଼ିଛନ୍ତି । ଚବିଶଘଣ୍ଟା ଭିତରେ ମୁଁ ଯାଇ ତାଙ୍କ ପାଖେ ପହଞ୍ଚିଲି । ଦେଖିଲି କୌଣସି ଗୁରୁତର ରୋଗର ଲକ୍ଷଣ ତାଙ୍କଠି ନାହିଁ । ଆଶ୍ୱସ୍ତ ହେଲି; କିନ୍ତୁ ତାଙ୍କ ଦେହ ବଡ଼ ଦୁର୍ବଳ ହୋଇଯାଇଥାଏ । କାରଣ ଗୋଟେ କେଶ୍ ଅନୁସନ୍ଧାନରେ ତା ଦି'ମାସକାଳ କଠିନ ପରିଶ୍ରମ କରିବାକୁ ପଡ଼ିଥିଲା । ସେତେବେଳେ ସେ ଦିନରେ ପନ୍ଦର ଘଣ୍ଟାରୁ କମ୍ କାମ କରୁ ନଥିଲେ । ତାଙ୍କ ପରିଶ୍ରମର ଗୌରବମୟ ଫଳ ଭୀଷଣ କ୍ଳାନ୍ତିର ପ୍ରତିକ୍ରିୟାକୁ ପ୍ରତିରୋଧ କରିପାରିଲା ନାହିଁ; ଫଳରେ ଯେତେବେଳେ ସାରା ଇଉରୋପରେ ତାଙ୍କ ନାଁ ଚହଳ ପକାଇଦେଇଥିଲା, ଆଉ ତାଙ୍କ କୋଠରିରେ ବିପୁଳ ସଂଖ୍ୟାରେ ଅଭିନନ୍ଦନ ଟେଲିଗ୍ରାମ୍ ଗଦା ହୋଇଥିଲା, ସେତିକିବେଳେ ସେ ବଡ଼ ଦୁର୍ବଳ ଆଉ ମଳିନ ହୋଇ ପଡ଼ିଥିବାର ଦେଖିଲି ।

ତିନିଦିନ ପରେ ଆମେ ସାଥିହୋଇ ବେକର୍ ଷ୍ଟ୍ରୀଟ୍‌କୁ ଫେରିଆସିଲୁ । କିନ୍ତୁ ମୁଁ ଦେଖିଲି ଯେ କିଛିଦିନପାଇଁ ଜାଗା ପରିବର୍ତ୍ତନ କରି ଅନ୍ୟ କେଉଁଠିକି ଗଲେ ତାଙ୍କ ସ୍ୱାସ୍ଥ୍ୟ ପକ୍ଷରେ ହିତକର ହେବ । ମଫସଲ ଜାଗାରେ ଯାଇ କିଛିଦିନ ରହିବାକୁ ବି ମୋର ଖୁବ୍ ଆଗ୍ରହ ଥିଲା । ମୋର ଜଣେ ପୁରୁଣା ବନ୍ଧୁ ଥିଲେ । ସେ ହେଲେ କର୍ଣ୍ଣେଲ୍ ହେଟର୍ । ଆଫଗାନିସ୍ଥାନରେ ସେ ମୋ ଚିକିତ୍ସାରେ ରହୁଥିଲେ । ଏବେ ସେ ସରେର ରିଗେଟ୍‌ରେ ଗୋଟେ ଘର କିଣି ସେଇଠି ରହୁଥିଲେ । ତାଙ୍କ ପାଖକୁ ବୁଲିଯିବାପାଇଁ ସେ ମୋ ପାଖକୁ ବରାବର ଚିଠି ଦିଅନ୍ତି । ତାଙ୍କ ଶେଷ ଚିଠିରେ ସେ ଲେଖିଥିଲେ, ମୋ ବନ୍ଧୁ ସେର୍‌ଲକ୍ ହୋମ୍‌ସ ଯଦି ମୋ ସାଥିରେ ଯାଆନ୍ତେ, ତେବେ ସେ ଖୁବ୍ ଖୁସି ହୁଅନ୍ତେ । ହୋମ୍‌ସ କାହାରି ଘରକୁ ଯିବାକୁ ମଙ୍ଗନ୍ତି ନାହିଁ । ତେଣୁ ଏଠି ଟିକିଏ ଚାଲ୍ ଖେଳିବା ଦରକାର ହେଉଥିଲା; କିନ୍ତୁ ହୋମ୍‌ସ ଯେତେବେଳେ ଜାଣିଲେ ଯେ ମୋ ବନ୍ଧୁ କର୍ଣ୍ଣେଲ୍ ହେଟର୍ ଅବିବାହିତ, ଆଉ ତାଙ୍କ ଘରେ ସ୍ୱାଧୀନ ଭାବରେ ଚଳିପାରିବେ, ସେ ମୋ ପ୍ରସ୍ତାବରେ ରାଜି ହୋଇଗଲେ । ଲିଅନ୍‌ସରୁ ଫେରିବାର ଏକ ସପ୍ତାହ

ପରେ ଆମେ କର୍ଣ୍ଣେଲ୍ ହେଟର୍‌ଙ୍କ ଘରେ ପହଞ୍ଚିଲୁ । ସେ ଅତି ସୁନ୍ଦର ଲୋକ, ଖୁବ୍ ମେଳାପି, ପୃଥିବୀର ଅନେକ ଆଡ଼ ବୁଲାବୁଲି କରିଛନ୍ତି ।

ଆମେ ଯେଉଁଦିନ ସେଠି ପହଞ୍ଚିଲୁ, ସେଇଦିନ ରାତିର କଥା । ଖାଇସାରି ଆମେ କର୍ଣ୍ଣେଲ୍‌ଙ୍କ ଅସ୍ତ୍ରଶସ୍ତ୍ର ଥିବା କୋଠରିରେ ବସିଥାଉ । ହୋମ୍‌ସ ଲମ୍ବ ହୋଇ ସୋଫା ଉପରେ ପଡ଼ିଯାଇଥାନ୍ତି । ହେଟର୍ ଆଉ ମୁଁ ତାଙ୍କ ବନ୍ଧୁକ ଆଦି ଦେଖୁଥାଉ । ହେଟର୍ କହିଲେ, ‘‘ମୁଁ ଉପରକୁ ଶୋଇବାକୁ ଗଲାବେଳେ ଏ ପିସ୍ତଲରୁ ଗୋଟେ ନେଇଯିବି । କାଳେ ରାତିରେ କିଛି ଭୟର ସୂଚନା ଦେଖାଯିବ ।’’

‘‘ଭୟର ସୂଚନା !’’ ମୁଁ କହିଉଠିଲି ।

‘‘ହଁ, ଏ କେତେଦିନହେଲା ଆମ ଏ ଅଞ୍ଚଳରେ ଗୋଟେ ଭୟ ଖେଳିଯାଇଛି । ମିଷ୍ଟର୍ ଆକ୍‌ଟନ୍ ଆମ ଏ ମଫସଲର ଜଣେ ଜଣାଶୁଣା ସମ୍ଭ୍ରାନ୍ତ ଲୋକ । ଗଲା ସୋମବାର ଦିନ ତାଙ୍କ ଘରେ ଡକାୟତି ହୋଇଯାଇଛି; ଅବଶ୍ୟ ବିଶେଷ କିଛି ଜିନିଷ ଯାଇନାହିଁ । ସେ ଡକାୟତଗୁଡ଼ାକ ଏବେ ବି ଏ ଅଞ୍ଚଳରେ ଅଛନ୍ତି ।’’

କର୍ଣ୍ଣେଲ୍‌ଙ୍କ ଆଡ଼କୁ ଆଖି ବୁଲାଇ ହୋମ୍‌ସ କହିଲେ, ‘‘କିଛି ସୂତ୍ର ମିଳିନାହିଁ ?’’

‘‘ନା, ଏଯାଏ କିଛି ମିଳିନାହିଁ । ତେବେ ଏଟା ଆମ ଏ ମଫସଲର ଗୋଟେ ନିହାତି ଛୋଟ ଅପରାଧ; ଆପଣଙ୍କ ଆନ୍ତର୍ଦେଶୀୟ ଘଟଣା ଆଗରେ ଅତି ସାମାନ୍ୟ ।’’

‘‘ଘଟଣାରେ କିଛି କୌତୂହଳପ୍ରଦ ଲକ୍ଷଣ ଅଛି ?’’

‘‘ମୁଁ ଭାବୁଛି ନାହିଁ । ଡକାୟତଗୁଡ଼ାକ ତାଙ୍କ ଲାଇବ୍ରେରିର ସବୁ ଆଲମିରା ଡ୍ରୟାର ଟିକିନିଖି କରି ଖୋଳିଛନ୍ତି; କିନ୍ତୁ ପୋପ୍‌ଙ୍କ ‘ହୋମ୍‌ସ’ର ବହି ଖଣ୍ଡେ, ହାତୀଦାନ୍ତର ଗୋଟିଏ ପେପର୍‌ୱେଟ୍, ଗୋଟିଏ ଛୋଟ ବାରୋମିଟର୍, ଆଉ ଗୋଟିଏ ସୂତାର ପିଣ୍ଡୁଳା ମାତ୍ର ଚୋରିଯାଇଛି ।’’

‘‘ବାଃ, ଏ ତ ବଡ଼ ବିଚିତ୍ର କଥା !’’ ମୁଁ କହିଉଠିଲି ।

ସୋଫା ଉପରୁ ହୋମ୍‌ସ ଗୁଁ-ଗୁଁ ହୋଇ କହିଉଠିଲେ, ‘‘ଏଠିକା ପୋଲିସ୍ ଘଟଣାରୁ କିଛି ନା କିଛି ସୂତ୍ର ବାହାର କରିବା ଉଚିତ । ଏଟା ନିଶ୍ଚିତ ଯେ... ।’’

କିନ୍ତୁ ମୁଁ ତାଙ୍କୁ ସାବଧାନ କରିଦେଇ କହିଲି, ''ତୁମେ କିଛିଦିନ ବିଶ୍ରାମ ନେବାପାଇଁ ଏଠିକି ଆସିଛ ହୋମ୍‌ସ ! ଏବେ ବି ତୁମ ଦୁର୍ବଳତା ଯାଇନାହିଁ । ତେଣୁ ଏ ନୂଆ ସମସ୍ୟା ଭିତରେ ମୁଣ୍ଡ ପୂରାଅନାହିଁ ।''

ହୋମ୍‌ସ ଟିକିଏ ଥଟ୍ଟାଳିଆ ଭଙ୍ଗୀରେ କର୍ଣ୍ଣେଲ୍‌ଙ୍କ ଆଡ଼କୁ ଚାହିଁଲେ; ଆଉ ତା'ପରେ ଆମେ ଅନ୍ୟ ବିଷୟରେ କଥାବାର୍ତ୍ତା ଆରମ୍ଭ କଲୁ । କିନ୍ତୁ ନିୟତିର ଗତିରୋଧ କରିବ କିଏ ? ମୋର ସବୁ ଡାକ୍ତରୀ ପରାମର୍ଶ ଶେଷରେ ଅକାରଣ ହେଲା । ପରଦିନ ସକାଳେ ସମସ୍ୟାଟା ଏମିତି ରୂପନେଇ ଆମ ପାଖରେ ପହଞ୍ଚିଲା ଯେ, ତାକୁ ଆଉ ହେଳା କରିବା ସମ୍ଭବ ହେଲାନାହିଁ । ଆମର ମଫସଲ ବୁଲିଯିବାଟା ଶେଷରେ ଯେଉଁ ରୂପ ନେଲା, ତା' ଆମେ ଆଶା କରି ନଥିଲୁ । ସକାଳେ ଆମେ ଜଳଖିଆ ଖାଇବସିଥାଉ, କର୍ଣ୍ଣେଲ୍‌ଙ୍କ ସରଘରିଆ ବ୍ୟସ୍ତଭାବରେ ଆସି ପହଞ୍ଚିଲା । ତା ଦେହ ପୂରା ଥରୁଥାଏ । ଧଇଁସଇଁ ହୋଇ ସେ କହିଲା, ''କନିଙ୍ଗହାମ୍‌ଙ୍କ ଘରଖବର ଶୁଣିଲେଣି ଆଜ୍ଞା ?''

କଫି କପ୍‌ଟା ଓଠ ପାଖରେ ଅଟକାଇ ନେଇ କର୍ଣ୍ଣେଲ୍ କହିଲେ, ''କ'ଣ, ଡକାୟତି ?''

''ନା ଆଜ୍ଞା; ହତ୍ୟା ।''

''ହତ୍ୟା ! କାହାକୁ ହତ୍ୟା କରାଯାଇଛି, ଜେ.ପି. କନିଙ୍ଗହାମ୍, ନା ତାଙ୍କ ପୁଅ ?''

ସେ କେହି ନୁହଁ ଆଜ୍ଞା ! ତାଙ୍କ ଘୋଡ଼ାସଇସ ଉଇଲିୟମ୍ । ତା' ଛାତିରେ ଗୁଳିମାଡ଼ ହୋଇଛି । ବିଚରା ପଦେ କଥା ବି କହିପାରିଲାନାହିଁ ।''

''ଗୁଳି ମାରିଲା କିଏ ?''

''ଡକାୟତ ଆଜ୍ଞା, ଡକାୟତ । ମାରିଦେଇ ପବନ ପରି ସେଠୁ ପଳେଇଲା । ଲୋକଟା ତାଙ୍କ ଭଣ୍ଡାରଘର ଝରକା ଭାଙ୍ଗୁଥିଲା । ଏତିକିବେଳେ ଉଇଲିୟମ୍ ଆସି ପହଞ୍ଚିଗଲା । ବିଚରା ମାଲିକର ସଂପତ୍ତି ରକ୍ଷା କରିବାକୁ ଯାଇ ନିଜ ପ୍ରାଣ ହରାଇଲା ।''

''କେତେବେଳେ ଏ ଘଟଣା ଘଟିଲା ?''

''କାଲି ରାତି ବାରଟା ପାଖାପାଖି ଆଜ୍ଞା !''

ସରଘରିଆ ଚାଲିଗଲା । କର୍ଣ୍ଣେଲ୍ ଜଳଖିଆ ଖାଇବାରେ ମନଦେଇ କହିଲେ, ''ଆମେ ଚଞ୍ଚଳ ସେଠିକି ଯିବା । ଏଟା ଗୋଟେ ବଡ଼ ଦୁର୍ଘଟଣା । ମିଷ୍ଟର କନିଙ୍ଘାମ୍ ଆମ ଏ ଅଞ୍ଚଳର ଜଣେ ନାଉଁଆ ସମ୍ଭ୍ରାନ୍ତ ଲୋକ, ବଡ଼ ଭଦ୍ରଲୋକ ମଧ୍ୟ । ସେ ବଡ଼ ବିବ୍ରତ ହୋଇପଡ଼ିଥିବେ; କାରଣ ଏ ଲୋକଟା ତାଙ୍କ ପାଖରେ ଅନେକ ଦିନରୁ ଚାକିରି କରୁଥିଲା । ଆକ୍‌ଟନ୍‌ଙ୍କ ଘରେ ଯେଉଁମାନେ ଡକାୟତି କରୁଥିଲେ, ଏଟା ନିଶ୍ଚୟ ସେ ସଇତାନମାନଙ୍କ କାମ ।''

ଟିକିଏ ଭାବି ହୋମ୍‌ସ କହିଲେ, ''ଯେଉଁମାନେ ସେ ବିଚିତ୍ର ଧରଣ ଚୋରି କରିଥିଲେ ।''

''ହଁ, ସେଇମାନେ ।''

''ହୁଁ, ଘଟଣାଟା ଖୁବ୍ ସରଳ ହୋଇପାରେ; କିନ୍ତୁ ଶୁଣିବାମାତ୍ରେ ଏହା ଟିକିଏ କୌତୂହଳପ୍ରଦ ଜଣାଯାଉଛି । ନୁହେଁ ? ଦଳେ ଡକାୟତ ଗୋଟେ ଅଞ୍ଚଳରେ ତାଙ୍କ କାମ କରୁଛନ୍ତି । ସାଧାରଣତଃ ସେମାନେ ଡକାୟତି କରିବା ଜାଗା ନିଶ୍ଚୟ ବଦଳାଇବେ; ମାତ୍ର କେତେଟା ଦିନ ଭିତରେ ଗୋଟେ ଗାଁରେ ଦି' ଦି'ଟା ଡକାୟତି କରିବେ ନାହିଁ । କାଲି ରାତିରେ ଯେତେବେଳେ ଆପଣ କିଛି ବିପଦ-ଆପଦ ପାଇଁ ସାବଧାନ ରହିବା କଥା କହିଲେ, ମୋର ମନେହେଲା, ଚୋରମାନେ ଏବେ ଏ ଜାଗା ଆଡ଼କୁ ମୋଟେ ଦୃଷ୍ଟି ଦେବେନାହିଁ; କିନ୍ତୁ ଏ ଘଟଣାରୁ ଜଣାଯାଉଛି, ମୋର ଆହୁରି ବହୁତ କିଛି ଶିଖିବାର ଅଛି ।''

''ମୁଁ ଭାବୁଛି, ଏଗୁଡ଼ା କୌଣସି ଜଣେ ସ୍ଥାନୀୟ ଲୋକର କାମ । ତେଣୁ ସେ ଡକାୟତି କରିବାକୁ ଆକ୍‌ଟନ୍ ଆଉ କନିଙ୍ଘାମ୍‌ଙ୍କ ଘରକୁ ବାଛିଚି । କାରଣ ସେ ଦୁଇ ଘର ହେଲେ ଏ ଅଞ୍ଚଳର ସବୁଠୁ ବଡ଼ ଆଉ ଜଣାଶୁଣା ଘର ।''

''ଆଉ ସବୁଠୁ ଧନୀ ମଧ୍ୟ ?''

''ସବୁଠୁ ଧନୀ ହେବା କଥା; କିନ୍ତୁ କେତେ ବର୍ଷ ହେଲା ତାଙ୍କ ଭିତରେ ଗୋଟେ ମକଦ୍ଦମା ଲାଗି ସେମାନେ ସର୍ବସ୍ୱାନ୍ତ ହୋଇଗଲେଣି ବୋଲି ମୋର ଅନୁମାନ । ଆକ୍‌ଟନ୍ କନିଙ୍ଘାମ୍‌ଙ୍କ ଜମିଦାରିର ଅଧା ଉପରେ ଦାବିକରି ଗୋଟେ ମକଦ୍ଦମା କଲେ, ଆଉ ଦି'ପକ୍ଷର ଓକିଲଙ୍କୁ ସୁବିଧା ମିଳିଲା ।''

ହାଇମାରି ହୋମ୍‌ସ କହିଲେ, ''ଡକାୟତଟା ଯଦି ସ୍ଥାନୀୟ ଲୋକ, ତେବେ ତାକୁ ଧରିବାରେ ତ କିଛି ଅସୁବିଧା ହେବନାହିଁ । ଛାଡ଼, ମୁଁ ଏଥିରେ ମୁଣ୍ଡ ଖେଳାଇବାକୁ ଚାହୁଁନାହିଁ ୱାଟ୍‌ସନ୍ ।''

ଏତିକିବେଳେ ଘରଘରିଆ ପଶିଆସି କହିଲା, ''ଇନିସ୍‌ପେକ୍ଟର ଫରେଷ୍ଟର୍ ସାର୍ ।'' ତା' ପଛେ ପଛେ ଇନିସ୍‌ପେକ୍ଟର୍ ଘର ଭିତରକୁ ପଶିଆସି କର୍ଣ୍ଣେଲଙ୍କୁ ଅଭିବାଦନ କଲେ । ବେଶ୍ ସୁସ୍ଥସବଳ ଯୁବକ, ଉଜ୍ଜ୍ୱଳ ମୁହଁ । ହସି ହସି କହିଲେ, ''ହଠାତ୍ ଆସି କିଛି ଅସୁବିଧା କରିନାହିଁ ବୋଧହୁଏ । ଶୁଣିଲି ବେକରଷ୍ଟ୍ରୀଟ୍‌ରେ ମିଷ୍ଟର ହୋମ୍‌ସ ଏଠିକି ଆସିଛନ୍ତି ।''

କର୍ଣ୍ଣେଲ୍ ମୋ ବନ୍ଧୁଙ୍କ ଆଡ଼କୁ ହାତ ଠାରିଦେଲେ । ମୁଣ୍ଡ ନୁଆଁଇ ଅଭିବାଦନ କରି ଇନିସ୍‌ପେକ୍ଟର କହିଲେ, ''ଆମର ଆଶା, ଆପଣ ଟିକିଏ କଷ୍ଟ ସ୍ୱୀକାର କରି ସେଯାଏ ଯିବେ ମିଷ୍ଟର ହୋମ୍‌ସ ।''

ହସି ହସି ହୋମ୍‌ସ କହିଲେ, ''ତୁମ କଥା ନ ହେଲା ଡାକ୍ତର ! ହଁ, ଆପଣ ଆସିବାର ଠିକ୍ ଆଗରୁ ଆମେ ସେଇକଥା କଥାବାର୍ତ୍ତା ହେଉଥିଲୁ ଇନିସ୍‌ପେକ୍ଟର । ଆପଣ ବୋଧହୁଏ ଆମକୁ ଘଟଣାଟା ଟିକିନିଖିଭାବେ କହିପାରିବେ ।''

''ଆକ୍‌ଟନ୍‌ଙ୍କ କେଶ୍‌ରେ ଆମେ କିଛି ସୂତ୍ର ପାଇପାରିଲୁ ନାହିଁ; କିନ୍ତୁ ଏ କେଶ୍‌ରେ ଗୁଡ଼ାଏ ସୂତ୍ର ମିଳିଛି । କାମଟା ଯେ ସେଇ ଏକା ଦଳର, ସେଥିରେ କିଛି ସନ୍ଦେହ ନାହିଁ । ତା' ଛଡ଼ା ଲୋକଟାକୁ ଅନ୍ୟମାନେ ଦେଖିଛନ୍ତି ।''

''ସତେ ?''

''ହଁ ଆଜ୍ଞା ! ବିଚରା ଉଇଲିୟମ୍‌କୁ ଗୁଳିକରି ଡକାୟତଟା ପବନପରି ଦୌଡ଼ି ପଳାଇଲା । ମିଷ୍ଟର୍ କନିଙ୍ଗ୍‌ହାମ୍ ତାଙ୍କ ଶୋଇବା ଘର ଝରକାବାଟେ ତାକୁ ଦେଖିଛନ୍ତି । ତାଙ୍କ ପୁଅ ଆଲେକ୍ କନିଙ୍ଗ୍‌ହାମ୍ ମଧ୍ୟ ପଛପାଖ ରାସ୍ତାରୁ ଲୋକଟାକୁ ଦେଖିଛନ୍ତି । ସେତେବେଳକୁ ରାତି ବାରଟା ବାଜିବାକୁ ପନ୍ଦର ମିନିଟ୍ ଥାଏ । ମିଷ୍ଟର କନିଙ୍ଗ୍‌ହାମ୍ ଠିକ୍ ଶୋଇବାକୁ ଆରମ୍ଭ କରୁଥିଲେ । ଆଲେକ୍ ତାଙ୍କ ରାତିପୋଷାକ ପିନ୍ଧି ସିଗାରେଟ୍ ଖଣ୍ଡେ ଟାଣୁଥିଲେ । ଦି'ଜଣଯାକ ଉଇଲିୟମ୍‌ର ବିକଳ ଡାକ ଶୁଣିପାରିଲେ । ଘଟଣା କ'ଣ ଦେଖିବାପାଇଁ ଆଲେକ୍ ତଳକୁ ଦୌଡ଼ିଆସିଲେ । ପଛପାଖ ଦରଜାଟା ଖୋଲାଥିଲା । ପାହାଚ ଶେଷରେ

ପହଞ୍ଚି ସେ ଦେଖିଲେ ଦି'ଜଣ ଲୋକ ଧସ୍ତାଧସ୍ତି ଲାଗିଛନ୍ତି । ସେଥିରୁ ଜଣେ ଗୋଟେ ଗୁଳି ମାରିଦେଲା, ଆଉ ଅନ୍ୟଜଣକ ତଳେ ପଡ଼ିଗଲା । ହତ୍ୟାକାରୀ ବଗିଚା ଭିତରଦେଇ ବାଡ଼ ଡେଇଁ ଦୌଡ଼ି ପଳାଇଲା । ମିଷ୍ଟର୍ କନିଙ୍ଗହାମ୍ ଶୋଇବାଘର ଝରକାବାଟେ ଦେଖିଲେ, ଲୋକଟା ରାସ୍ତାରେ ଦୌଡ଼ି ପଳାଉଛି । ମୁହୂର୍ତ୍ତକ ଭିତରେ ସେ ଆଖିଆଗରୁ ଚାଲିଗଲା । ମିଷ୍ଟର ଆଲେକ୍ ଆହତ ଉଇଲିୟମ୍‌କୁ ସାହାଯ୍ୟ କରିବାପାଇଁ ସେଠି ରହିଗଲେ । ତେଣୁ ଡକାୟତଟା ଖସି ପଳେଇବାକୁ ସୁବିଧା ପାଇଗଲା । ଲୋକଟା ଆକାରରେ ମଧଭଳିଆ, ଆଉ ଗୋଟେ କଳା ପୋଷାକ ପିନ୍ଧିଥିଲା । ଯା ବ୍ୟତୀତ ତା' ବିଷୟରେ ଆଉ କିଛି ଜଣାନାହିଁ । ଲୋକଟା ଯଦି ବାହାରର ହୋଇଥାଏ, ତେବେ ଖୁବ୍ ଶୀଘ୍ର ଆମେ ତାକୁ ଧରିନେବୁ । ଆମର ଅନୁସନ୍ଧାନ ଜୋର୍‌ସୋର୍‌ରେ ଚାଲିଛି ।''

''ଏଇ ଉଇଲିୟମ୍ ସେଠି କ'ଣ କରୁଥିଲା ? ମଲା ପୂର୍ବରୁ ସେ କିଛି କହୁଥିଲା ?''

''ନା, କିଛି ପଦେବି କହିନାହିଁ । ସେ ତା' ବୁଢ଼ୀ ମା' ସାଥିରେ ପାଖରେ ଗୋଟେ ଘର ନେଇ ରହୁଥିଲା । ଭାରି ବିଶ୍ୱାସୀ ଲୋକ । ଆମର ଅନୁମାନ ସବୁ ଠିକ୍ ଅଛି କି ନାହିଁ ଦେଖିବାଲାଗି ସେ ତା' ମାଲିକଙ୍କ ଘରଆଡ଼େ ଯାଇଥିଲା । ଅବଶ୍ୟ ଆକ୍‌ଟନ୍‌ଙ୍କ ଘର ଡକାୟତି ପରେ ସମସ୍ତେ ସାବଧାନ ହୋଇ ଯାଇଥିଲେ । ଡକାୟତଟା ତାଲା ଭାଙ୍ଗି ଦରଜା ଖୋଲିଲାବେଳକୁ ଉଇଲିୟମ୍ ନିଶ୍ଚୟ ଆସି ପହଞ୍ଚିଯାଇଥିବ ।''

''ଉଇଲିୟମ୍ ଘରୁ ଆସିବା ଆଗରୁ ତା' ମାଆକୁ କିଛି କହିଥିଲା ?''

''ତା ମାଆ ଅତି ବୁଢ଼ୀ, ପୁଣି କାଲୁଣୀ । ତା'ଠୁ ଆମେ କିଛି ଖବର ପାଇ ପାରିଲୁ ନାହିଁ । ଦୁଃଖରେ ସେ ବାୟାଣୀ ପରି ହୋଇଯାଇଛି । ଯାହାହେଉ ଆଉ ଗୋଟେ ଖୁବ୍ ଗୁରୁତ୍ୱପୂର୍ଣ୍ଣ ଜିନିଷ ଅଛି । ଏଇଟା ଦେଖନ୍ତୁ ।'' ସେ ତାଙ୍କ ନୋଟ୍ ବହିରୁ ଖଣ୍ଡେ ଟୁକୁରାକାଗଜ ବାହାରକରି ଆଣ୍ଠୁ ଉପରେ ଧରି କହିଲେ, ''ଏଇ ଖଣ୍ଡ ମୃତଲୋକର ବୁଢ଼ାଆଙ୍ଗୁଠି ଆଉ ବିଶିଆଙ୍ଗୁଠି ମଝିରୁ ମିଳିଛି । ଏ ଖଣ୍ଡ ଖଣ୍ଡେ ବଡ଼କାଗଜର ଚିରା ଅଂଶ ପରି ଜଣାଯାଉଛି । ଆପଣ ଦେଖନ୍ତୁ, ଏଥିରେ ଯେଉଁ ସମୟ ଲେଖାଅଛି ଠିକ୍ ସେତିକିବେଳେ ବିଚରା ଉଇଲିୟମ୍‌ର ମରଣ ହୋଇଛି । ମୃତଲୋକ ତା' ହତ୍ୟାକାରୀ ହାତରୁ ଏ ଖଣ୍ଡ ଛଡ଼ାଇଆଣିଛି

କିମ୍ବା ହତ୍ୟାକାରୀ ମୃତଲୋକ ହାତରୁ ଆରଖଣ୍ଡ ଛଡ଼ାଇନେଇଛି । ଜଣାଯାଉଛି, ଏଟା ଖଣ୍ଡେ ଚିଠି । କୌଣସି ଜାଗାରେ ଦେଖାକରିବାପାଇଁ ଲେଖାଯାଇଛି ।''

ହୋମ୍‌ସ କାଗଜ ଟୁକୁରାଖଣ୍ଡ ନେଇ ଦେଖିଲେ ।

ଇନିସ୍‌ପେକ୍ଟର ପୁଣି କହି ଚାଲିଲେ, ''ଧରି ନିଆଯାଉ ଏଟା ଦେଖା କରିବାପାଇଁ ଲେଖାଯାଇଥିବା ଖଣ୍ଡେ ଚିଠି । ଏଟା ଅନୁମାନ କରିବା ସ୍ୱାଭାବିକ ଯେ ଏଇ ଉଇଲିୟମ୍ ସଚ୍ଚୋଟ ଲୋକ ବୋଲି ଜଣା ପଡୁଥିଲେ ବି ଡକାୟତ ସାଥିରେ ତା'ର ସଲା ଥିଲା । ସେ ଦରଜା ପାଖରେ ଡକାୟତକୁ ଭେଟିଥିବ । ଦରଜା ଭାଙ୍ଗିବାରେ ହୁଏତ ତା'କୁ ସାହାଯ୍ୟ କରିଥିବ ଓ ପରେ ତାଙ୍କ ଭିତରେ ଝଗଡ଼ା ହୋଇଥିବ ।''

ହୋମ୍‌ସ ଏକଲୟରେ କାଗଜଖଣ୍ଡ ଦେଖୁଥାନ୍ତି । ଟିକିଏ ପରେ ସେ କହିଲେ, ''ଏ ଲେଖା ଅତି ଅସାଧାରଣ ଆଉ କୌତୂହଳପ୍ରଦ । ମୁଁ ଯାହା ଭାବୁଥିଲି ଘଟଣାଟା ତା'ଠୁ ଆହୁରି ବେଶି ଗହୀରରେ ।'' ଏତିକି କହି ସେ ଦୁଇହାତ ପାପୁଲିରେ ମୁଣ୍ଡ ରଖି ବସିଗଲେ । ଲଣ୍ଡନର ଏଇ ବିଖ୍ୟାତ ଅପରାଧ ବିଶେଷଜ୍ଞଙ୍କ ଅବସ୍ଥା ଦେଖି ଇନିସ୍‌ପେକ୍ଟର ଅଳ୍ପ ଅଳ୍ପ ହସୁଥାନ୍ତି । ହୋମ୍‌ସ କହିଲେ, ''ଆପଣଙ୍କର ଶେଷ ମନ୍ତବ୍ୟ ହେଲା ଏଇ ଡକାୟତ ଆଉ ଚାକର ଭିତରେ କିଛି ସଲାସୂତ୍ର ଥିଲା । ଚିଠିଟା ଜଣେ ଅନ୍ୟ ପାଖକୁ ଦେଇଛି । ସେଟା ଅବଶ୍ୟ ଅସମ୍ଭବ ନୁହେଁ; କିନ୍ତୁ ଏ ଲେଖାରୁ ଜଣାଯାଉଛି....'' ସେ ପୁଣି ପାପୁଲିରେ ମୁହଁ ରଖି, କିଛି ସମୟ ଚିନ୍ତା କରି ବସିଗଲେ । ଟିକିଏ ପରେ ସେ ମୁହଁ ଟେକିଲେ । ଦେଖିଲି ତାଙ୍କ ମୁହଁ ଖୁବ୍ ଉଜ୍ଜ୍ୱଳ ଆଉ ସତେଜ । ବେମାର ପଡ଼ିବା ଆଗରୁ ଅବସ୍ଥା ଯାହା ଥିଲା, ସେଇପରି ହୋଇଗଲା । ଧଡ଼୍‌କରି ଚଉକିରୁ ଉଠି ସେ ଠିଆ ହୋଇପଡ଼ି କହିଲେ, ''ନା, ମୋତେ ଏ ଘଟଣା ଟିକିନିଖି ଦେଖିବାକୁ ହେବ । ଏଥିରେ କିଛି ନା କିଛି ରହସ୍ୟ ଅଛି । ଦେଖନ୍ତୁ କର୍ଣ୍ଣେଲ୍, ଆପଣ ଆଉ ମୋ ବନ୍ଧୁ ଏଠି ଥାଆନ୍ତୁ । ମୁଁ ଇନିସ୍‌ପେକ୍ଟର୍‌ଙ୍କ ସାଥିରେ ଯାଇ କେତେଟା ଜିନିଷ ଦେଖିଆସିବି । ଅଧଘଣ୍ଟାଏ ଭିତରେ ଫେରି ଆସିବି ।''

ଦେଢ଼ଘଣ୍ଟା ପରେ ଇନିସ୍‌ପେକ୍ଟର ଏକା ଫେରିଲେ । କହିଲେ, ''ହୋମ୍‌ସ ଏକା ବାହାର ପଡ଼ିଆରେ ବୁଲୁଛନ୍ତି । ଆମେ ଚାରିଜଣଯାକ ସାଥି ହୋଇ ସେ ଘରକୁ ଯିବା ତାଙ୍କର ଇଚ୍ଛା ।''

''କ'ଣ ମିଷ୍ଟର୍ କନିଙ୍ଗ୍‌ହାମ୍‌ଙ୍କ ଘରକୁ ?''

''ହଁ ।''

''କାହିଁକି ?''

ମୁହଁ ଆମିଳା କରି ଇନିସ୍‌ପେକ୍ଟର କହିଲେ, ମୁଁ କିଛି ଜାଣି ନାହିଁ । ତେବେ ମୋର ଅନୁମାନ, ହୋମ୍‌ସ ବେମାରିରୁ ପୂରା ଭଲ ହୋଇନାହାନ୍ତି । ତାଙ୍କ ଢଙ୍ଗଢାଙ୍ଗ ବଡ଼ ଅବାଗିଆ ଜଣାଯାଉଛି । ସେ ବି ଖୁବ୍ ଉତ୍ତେଜିତ ଜଣାଯାଉଛନ୍ତି ।''

ଟିକିଏ ହସି ମୁଁ କହିଲି, ''ସେଥିପାଇଁ ଆପଣଙ୍କର ଚିନ୍ତା କରିବା ଦର୍କାର ନାହିଁ ଇନିସ୍‌ପେକ୍ଟର୍ ! ମୁଁ ବରାବର ଦେଖିଛି, ତାଙ୍କର ଏଇ ପାଗଳାମି ଭିତରେ ହିଁ ସୁଚିନ୍ତିତ କାର୍ଯ୍ୟପନ୍ଥା ଥାଏ ।''

''କିନ୍ତୁ ଯେ ଦେଖିବ, ସେ କହିବ ତାଙ୍କ କାର୍ଯ୍ୟପଦ୍ଧତି ଭିତରେ ପାଗଳାମି ରହିଛି । ସେ ଯାହାହେଉ, ଚଞ୍ଚଳ ଯିବାପାଇଁ ସେ କହିଥିଲେ । ତେଣୁ ଆପଣମାନେ ଯଦି ପ୍ରସ୍ତୁତ ଅଛନ୍ତି, ଆମେ ବର୍ତ୍ତମାନ ଯିବା ।''

ଆମେ ଖୁବ୍ ଶୀଘ୍ର ଯାଇ ପହଞ୍ଚିଲୁ । ଦେଖିଲୁ ହୋମ୍‌ସ ପଡ଼ିଆରେ ଏପାଖ ସେପାଖ ବୁଲୁଛନ୍ତି । ଛାତି ଉପରକୁ ମୁଣ୍ଡ ଲଇଁପଡ଼ିଛି । ହାତ ଦୁଇଟା ପ୍ୟାଣ୍ଟ ପକେଟରେ । ଆମକୁ ଦେଖି କହିଲେ, ''ଘଟଣାଟାର କୌତୂହଳ ଖୁବ୍ ବଢ଼ିଯାଇଛି ୱାଟ୍‌ସନ୍ ! ତୁମର ମଫସଲ ବୁଲିଆସିବା ବେଶ୍ ଫଳପ୍ରଦ ହୋଇଛି ।''

କର୍ଣ୍ଣେଲ୍ ପଚାରିଲେ ''ଆପଣ ବୋଧହୁଏ ଘଟଣାସ୍ଥଳକୁ ଯାଇଥିଲେ ?''

''ହଁ ଇନିସ୍‌ପେକ୍ଟର୍ ଆଉ ମୁଁ କେତେଟା ପ୍ରାରମ୍ଭିକ ଦେଖାଦେଖି କରି ନେଇଛୁ ।''

''କିଛି ଫଳ ମିଳିଲା ?''

''ହଁ କେତେଟା ଖୁବ୍ ରହସ୍ୟପୂର୍ଣ୍ଣ ଜିନିଷ ଦେଖିଲୁ । ଚାଲ ଯିବା । ଯାଉ ଯାଉ ମୁଁ ସବୁକଥା କହିବି । ପ୍ରଥମେ ଆମେ ବିଚରା ହତଭାଗାର ମୃତଦେହ ଦେଖିଲୁ । ସେ ନିଶ୍ଚୟ ରିଭଲ୍‌ଭର ଗୁଳିରେ ମରିଛି ।''

''ଆପଣଙ୍କର କ'ଣ ସେଥିରେ କିଛି ସନ୍ଦେହ ଥିଲା ?''

''ସନ୍ଦେହ ନଥିଲେ ବି ସବୁ କଥା ପରୀକ୍ଷା କରି ଦେଖିବା ଭଲ । ଆମର ପରିଦର୍ଶନଟା ଅକାରଣ ହୋଇନାହିଁ । ତା'ପରେ ଆମେ ମିଷ୍ଟର୍ କନିଙ୍ଗ୍‌ହାମ୍ ଆଉ ତାଙ୍କ ପୁଅ ସାଥିରେ ଦେଖାକଲୁ । ଡକାୟତଟା ପଳେଇଲାବେଳେ ବଗିଚା ବାଡ଼ର ଠିକ୍ ଯେଉଁ ଜାଗାଟା ଭାଙ୍ଗି ଚାଲିଯାଇଥିଲା, ସେ ଆମକୁ ସେ ଜାଗାଟା ଦେଖାଇଦେଲେ । ସେଟା ହେଲା ଖୁବ୍ ଗୁରୁତ୍ୱପୂର୍ଣ୍ଣ ।''

''ସେଟା ତ ହେବା ସ୍ୱାଭାବିକ ।''

''ତା'ପରେ ଆମେ ବିଚରାର ମାଆ ପାଖକୁ ଗଲୁ । ସେ ନିହାତି ବୁଢ଼ୀ ଆଉ ଦୁର୍ବଳ । ଆମେ ତା' ପାଖରୁ କିଛି ସମ୍ବାଦ ପାଇପାରିଲୁନାହିଁ ।''

''ତା'ହେଲେ ଆପଣଙ୍କ ଅନୁସନ୍ଧାନର ଫଳ ଆଉ କ'ଣ ?''

''ଅପରାଧଟା ଅସାଧାରଣ ବୋଲି ନିଶ୍ଚିତରୂପେ ଜାଣିବା । ବୋଧହୁଏ ଖୁବ୍ ଶୀଘ୍ର ଘଟଣାଟା ଆମ ଆଗରେ ପରିଷ୍କାର ହୋଇଯିବ । ଆଚ୍ଛା, ଇନିସ୍‌ପେକ୍ଟର୍, ଗୋଟେ ବିଷୟରେ ଆମେ ଏକମତ ଯେ ମୃତଲୋକ ହାତରୁ ଯେଉଁ କାଗଜଖଣ୍ଡି ମିଳିଛି, ସେଥିରେ ଲେଖାଥିବା ସମୟ ଠିକ୍ ତା'ର ମୃତ୍ୟୁ ସମୟ । ଏଇଟା ନିଶ୍ଚୟ ଖୁବ୍ ଗୁରୁତ୍ୱପୂର୍ଣ୍ଣ ।''

''ହଁ, ସେଥିରୁ କିଛି ନା କିଛି ସୂତ୍ର ମିଳିବା କଥା ମିଷ୍ଟର୍ ହୋମ୍‌ସ ।''

''ନିଶ୍ଚୟ । ସେଥିରୁ ସୂତ୍ର ମିଳିଛି । ଯେଉଁ ଲୋକ ଏ ଚିଠିଟା ଲେଖିଛି ତା'ରି ଯୋଗୁଁ ଉଇଲିୟମ୍ ସେଠିକି ଏତେ ରାତିରେ ଆସିଛି; କିନ୍ତୁ ସେ ଚିଠି କାଗଜର ଆରଖଣ୍ଡକ ଗଲା କୁଆଡ଼େ ।''

''ସେଖଣ୍ଡ ପାଇବା ଆଶାରେ ମୁଁ ସେ ପାଖଆଖ ଚାରିଆଡ଼େ ଟିକିନିଖି କରି ଖୋଜିଛି ।''

''ସେଖଣ୍ଡ ମଲାଲୋକ ହାତରୁ ଟାଣି ଚିରି ନିଆଯାଇଛି । କେହି ଲୋକ ସେ କାଗଜଖଣ୍ଡ ନେଇଯିବା ପାଇଁ ଏତେ ବ୍ୟଗ୍ର ହେବ କାହିଁକି ? ଆଉ ନେଇଗଲା ପରେ ସେ ସେଖଣ୍ଡ କ'ଣ କରିଥିବ ? ଯେତେଦୂର ସମ୍ଭବ ତା' ପକେଟ୍‌ରେ ସେଖଣ୍ଡ ପୂରାଇ ଦେଇଥିବ । ସେଥିରୁ ଖଣ୍ଡେ ଚିରିଯାଇଛି ବୋଲି ସେ ହୁଏତ ଜାଣିପାରି ନାହିଁ । ଆମେ ସେ ଆର କାଗଜଖଣ୍ଡକ ପାଇପାରିଲେ ଏ ରହସ୍ୟ ସମାଧାନ ଖୁବ୍ ସହଜ ହୋଇଯିବ ।''

''ତା' ସତ; ହେଲେ ଅପରାଧୀକୁ ଧରିବା ଆଗରୁ ଆମେ ତା' ପକେଟ୍‌ରୁ କାଗଜ ଖଣ୍ଡ ପାଇବା କେମିତି ?''

''ସେଟା ଅବଶ୍ୟ ଭାବିବା କଥା । ତେବେ ଆଉ ଗୋଟେ ପଏଣ୍ଟ ଅଛି । ଚିଠିଟା ଉଇଲିୟମ୍ ପାଖକୁ ଲେଖାଯାଇଛି । ଯେ ଲେଖିଛି, ସେ ତ ନିଜେ ନେଇ ସେଟା ଉଇଲିୟମ୍‌କୁ ଦେଇନାହିଁ - କାରଣ ସେ ତ ଖବରଟା ମୁହେଁ ମୁହେଁ କହିଦେଇ ପାରିଥାନ୍ତା । ତେବେ ଚିଠିଟା ଆଣିଲା କିଏ ? ନାଁ ଡାକରେ ସେଟା ଆସିଛି ?''

''ମୁଁ ସେ ବିଷୟରେ ଅନୁସନ୍ଧାନ କରିଥିଲି । ଗଲା କାଲି ଉପରବେଳା ଡାକରେ ଉଇଲିୟମ୍ ଖଣ୍ଡେ ଚିଠି ପାଇଛି । ଲଫାପାଟା ସେ ଚିରିଦେଇଛି ।''

''ସାବାସ୍ ଇନିସ୍‌ପେକ୍ଟର ! ଆପଣ ତେବେ ପୋଷ୍ଟମ୍ୟାନ୍‌କୁ ଭେଟିଥିଲେ ? ଆପଣଙ୍କ ସାଥିରେ କାମ କରିବାର ମଜା ଅଛି । ହଁ ଏଇଟା ତ ଘର ହୋଇଗଲା । ଆପଣ ଯଦି ମୋ ସାଥିରେ ଆସିବେ କର୍ଣ୍ଣେଲ୍, ତେବେ ମୁଁ ଘଟଣାସ୍ଥଳଟା ଆପଣଙ୍କୁ ଦେଖାଇଦେବି ।''

''ଆମେ ଗୋଟେ ସୁନ୍ଦର ଛୋଟ ଘର ପାଖଦେଇ ଗଲୁ । ମୃତ ଉଇଲିୟମ୍ ସେଇ ଘରେ ରହୁଥିଲା । ତା'ପରେ ଦି'ପାଖରେ ଓକ୍‌ଗଛ ଥିବା ଗୋଟେ ସରୁ ରାସ୍ତାରେ ମିଷ୍ଟର୍ କନିଙ୍ଗ୍‌ହାମ୍‌ଙ୍କ ପୁରୁଣା ଘର କୁଇନ୍‌ଆନେ ଆଡ଼କୁ ଚାଲିଲୁ । ସଦର ଦରଜାର ଲିଣ୍ଟେଲ୍‌ରେ ଘର ତିଆରି ତାରିଖ ଲେଖାଥିଲା । ହୋମ୍‌ସ ଆଉ ଇନିସ୍‌ପେକ୍ଟର ଆମକୁ ସେଠୁ ବୁଲେଇନେଲେ । ଆମେ ଘରର ଗୋଟେ କଡ଼ରେ ଥିବା ଗେଟ୍ ପାଖରେ ପହଞ୍ଚିଲୁ । ସେଠୁ ବାଡ଼ଯାଏ ବଗିଚା । ବାଡ଼ଟା ସଡ଼କର କଡ଼େ କଡ଼େ । ରୋଷେଇଘର ଦରଜା ପାଖରେ ଜଣେ କନଷ୍ଟେବଲ୍ ଠିଆ ହୋଇଥିଲା । ହୋମ୍‌ସ କହିଲେ, ଦରଜାଟା ଖୋଲିଦିଅ । ଏଥର ଦେଖ, ଏଇ ପାହାଚ ଉପରେ ସାନ କନିଙ୍ଗ୍‌ହାମ୍ ଠିଆ ହୋଇଥିଲେ । ଆମେ ଯେଉଁଠି ଅଛେ, ସେଠି ଲୋକ ଦୁଇଟା ମାଡ଼ଗୋଳ ଲାଗୁଥିବାର ସେ ଦେଖିଲେ । ମିଷ୍ଟର କନିଙ୍ଗ୍‌ହାମ୍ ସେଇ ଝରକା ପାଖରେ ଠିଆ ହୋଇଥିଲେ - ବାଁ କଡ଼ରୁ ସେଇ ଦ୍ୱିତୀୟ ଝରକାଟା । ସେଇଠୁ ସେ ଦେଖିଲେ, ଲୋକଟା ସେ ବୁଦାର ବାଁ ପାଖରେ ପଳାଇଗଲା । ତାଙ୍କ ପୁଅ ବି ଦେଖିଛନ୍ତି । ସେମାନେ ସେ ବିଷୟରେ ନିଶ୍ଚିତ । ତା'ପରେ ମିଷ୍ଟର ଆଲେକ୍ ଦୌଡ଼ିଯାଇ ଆହତ ଲୋକ ପାଖରେ

ଆଣ୍ଠୁମାଡ଼ି ବସିଗଲେ । ଆପଣମାନେ ଦେଖୁଛନ୍ତି ଚାଗାଟା ଖୁବ୍ ଟାଣ । ଆମକୁ ସାହାଯ୍ୟ କରିବାପାଇଁ କିଛି ଚିହ୍ନ ନାହିଁ ।''

ଆମେ ଏମିତି କଥା ହେଉଥିବା ବେଳେ ଘରର ଗୋଟେ କଣଆଡୁ ବଗିଚା ଭିତର ଦେଇ ଦି'ଜଣ ଲୋକ ଆସିଲେ । ଜଣେ ବୟସ୍କ ଲୋକ, ଅନ୍ୟଜଣକ ଯୁବକ । ବେଶ୍ ସୁସ୍ଥ ସବଳ । ହସ ହସ ମୁହଁ । ଦେହରେ ଦାମିକା ଚକ୍‌ଚକିଆ ପୋଷାକ; ପରିବେଶ ସାଙ୍ଗରେ ମୋଟେ ଖାପ୍ ଖାଉ ନଥିଲା । ହୋମ୍‌ସଙ୍କୁ ଚାହିଁ ସେ କହିଲେ, ''ତଥାପି ବି ଏଇଠି ? ମୋର ଧାରଣା ଥିଲା ଲଣ୍ଡନବାସୀମାନେ କିଛି ଭୁଲ କରନ୍ତି ନାହିଁ; କିନ୍ତୁ ଆପଣ ତ ସେପରି ଜଣାପଡୁନାହାନ୍ତି ।''

ହସି ହସି ହୋମ୍‌ସ କହିଲେ, ''ଆପଣମାନେ ଆମକୁ କିଛି ସମୟ ଦେବା ଦର୍କାର ।''

''ତା ଆପଣ ଦର୍କାର କରିବେ । ହେଲେ ଏଠି କିଛି ସୂତ୍ର ଥିଲାପରି ତ ମୁଁ ଜାଣିପାରୁ ନାହିଁ ।''

ଇନିସ୍‌ପେକ୍ଟର ଉତ୍ତର ଦେଲେ, ''କେବଳ ଗୋଟାଏ ସୂତ୍ର ଅଛି । ଆମେ ଯଦି କେବଳ ଜାଣିପାରନ୍ତୁ - ହେ ଭଗବାନ୍ ! କ'ଣ ହେଲା ମିଷ୍ଟର ହୋମ୍‌ସ ?''

ହଠାତ୍ ମୋ ବନ୍ଧୁ ବିଚରା ହୋମ୍‌ସଙ୍କ ମୁହଁ ଭୟଙ୍କରଭାବେ କରୁଣ ଦେଖାଗଲା । ଆଖି ଦି'ଟା ଡିମା ଡିମା ହୋଇ ଉପରକୁ ଉଠିଗଲା । ବେଦନାରେ ତାଙ୍କ ସାରା ଦେହ କମ୍ପିଗଲା । ଗଁ ଗଁ ଶବ୍ଦ କରି ସେ ମୁହଁମାଡ଼ି ତଳେ ପଡ଼ିଗଲେ । ହଠାତ୍ ତାଙ୍କୁ ଏମିତି ରୋଗ ଆକ୍ରମଣ କରିବା ଦେଖି ଆମେ ଡରିଗଲୁ । ଟେକାଟେକି କରି ତାଙ୍କୁ ରୋଷେଇଘରକୁ ନେଇ ଗୋଟେ ବଡ଼ ଚଉକିରେ ଶୁଆଇଦେଲୁ । କିଛି ସମୟ ଯାଏ ସେ ଦୀର୍ଘନିଃଶ୍ୱାସ ମାଇଲେ । ତା'ପରେ ଉଠି ବସିଲେ । ତାଙ୍କର ଏ ଦୁର୍ବଳତା ପାଇଁ କ୍ଷମା ମାଗିଲେ । ଲାଜରେ ତାଙ୍କ ମୁହଁ ରଙ୍ଗା ପଡ଼ିଯାଇଥାଏ । ଘଟଣାଟା ବୁଝାଇଦେଇ ସେ କହିଲେ, ''ୱାଟ୍‌ସନ୍ ଜାଣନ୍ତି ଯେ ମୁଁ ଅଳ୍ପଦିନ ହେଲା ଏକ ଶକ୍ତ ବେମାରିରୁ ଭଲ ହୋଇଛି । ସେଥିପାଇଁ ବେଳେ ବେଳେ ଏମିତି ଦୁର୍ବଳତା ଆସିଯାଉଛି ।''

ମିଷ୍ଟର କନିଙ୍ଗ୍‌ହାମ୍ କହିଲେ, ''ମୋ ଘୋଡ଼ାଗାଡ଼ିରେ ଆପଣ ଘରକୁ ଚାଲିଯିବେ ?''

''ଏଠିକି ଯେତେବେଳେ ଆସିଛି ଗୋଟେ ବିଷୟ ମୁଁ ନିଶ୍ଚିତ ହେବାକୁ ଚାହେଁ । ଆମେ ଖୁବ୍ ସହଜରେ ତାହା ପରୀକ୍ଷା କରି ଦେଖିପାରିବା ।''

''କୋଉ ବିଷୟ ?''

''ମୁଁ ଭାବୁଛି ଡକାୟତ ଘରକୁ ଆସିବା ପରେ ଉଇଲିୟମ୍ ସେଠିକି ଆସିଥିବାଟା ଖୁବ୍ ସମ୍ଭବ - ପୂର୍ବରୁ ନୁହେଁ । ଆପଣତ ନିଶ୍ଚିତ ଯେ ଦରଜା ଭଙ୍ଗା ଯାଇଥିଲେ ବି ଡକାୟତଟା ଘରେ ପଶିନାହିଁ ।''

''ମୋ ମତରେ ସେଟା ସ୍ୱାଭାବିକ । ମୋ ପୁଅ ଆଲେକ୍ ସେତେବେଳଯାଏ ଶୋଇବାକୁ ଯାଇ ନଥିଲା । ବାହାରେ କେହି ଥିଲେ ସେ ନିଶ୍ଚୟ ଶୁଣିପାରିଥାନ୍ତା ।''

''ସେ କେଉଁଠି ବସିଥିଲେ ?''

''ମୁଁ ମୋ ଡ୍ରେସିଂ ରୁମ୍‌ରେ ବସି ସିଗାରେଟ୍ ଟାଣୁଥିଲି ।'' ଆଲେକ୍ କହିଲେ ।

''ତୁମ ଘରର ଝରକା କେଉଁଟା ?''

''ବାଁ ପାଖର ଶେଷଟା, ମୋ ବାପାଙ୍କ କୋଠରି ପାଖଟା ।''

''ଆପଣଙ୍କ ରୁମ୍‌ର ଦି'ଟା ଯାକ ଆଲୁଅ ନିଶ୍ଚୟ ଜଳୁଥିଲା ।''

''ହଁ ନିଶ୍ଚୟ ।''

ଟିକିଏ ହସିଦେଇ ହୋମ୍‌ସ କହିଲେ, ''ଏଥିରେ କେତେଟା ଅସାଧାରଣ ପଏଣ୍ଟ ରହିଛି । ଜଣେ ଡକାୟତ ଆଗରୁ କେତେଥର ଡକାୟତି କରିଛି । ସେ ଦେଖୁଛି ଯେ ଗୋଟେ ଘରେ ଆଲୁଅ ଜଳୁଛି, ଆଉ ଦି'ଜଣ ସେଯାଏ ଶୋଇନାହାନ୍ତି । ସେତେବେଳେ ସେ ଜାଣି ଜାଣି ସେହି ଘରେ ପଶିବାଟା ନିହାତି ଅସମ୍ଭବ ଆଉ ଅପ୍ରାସଙ୍ଗିକ ନୁହେଁ କି ?''

''ଲୋକଟା ନିଶ୍ଚୟ ଖୁବ୍ ଦୁଃସାହସୀ ହୋଇଥିବ ।''

ମିଷ୍ଟର ଆଲେକ୍ କହିଲେ, ''ଅବଶ୍ୟ କେଶ୍‌ଟା ସେମିତି ଗୁରୁତର ହୋଇ ନଥିଲେ ଆମେ ଆପଣଙ୍କ ସାହାଯ୍ୟ ଚାହିଁ ନଥାନ୍ତୁ; କିନ୍ତୁ ଆପଣଙ୍କର ଯଦି ଧାରଣା ଯେ ଉଇଲିୟମ୍ ଲୋକଟାକୁ ଧରିବା ଆଗରୁ ସେ କିଛି ଚୋରି କରିଥିଲା, ତେବେ ସେଟା ନିହାତି ଅମୂଳକ ଧାରଣା । କାରଣ ତା' ହୋଇଥିଲେ

ଆମ ଘରର ଜିନିଷପତ୍ର ଘଣ୍ଟାଘଣ୍ଟି ହେବା କିମ୍ବା କିଛି ଜିନିଷ ନଥିବାର ଆମେ ଦେଖିଥାନ୍ତୁ ।''

ହୋମ୍‌ସ ଉତ୍ତର ଦେଲେ, ''ସେଟା ଜିନିଷ ଉପରେ ନିର୍ଭର କରୁଛି । ଆପଣଙ୍କର ମନେରଖିବା ଉଚିତ ଯେ ଆମେ ଯେଉଁ ଡକାୟତକୁ ଧରିବାକୁ ଲାଗିଛେ, ସେ ଏକ ଅସାଧାରଣ ଲୋକ; ଆଉ ଜଣାଯାଉଛି ତା'ର କାର୍ଯ୍ୟପନ୍ଥା ସ୍ୱତନ୍ତ୍ର । ଉଦାହରଣସ୍ୱରୂପ ଦେଖନ୍ତୁ, ମିଷ୍ଟର ଆକ୍ଟନ୍‌ଙ୍କ ଘରୁ ସେ ଯେଉଁ ଜିନିଷ ନେଇଛି, ତା' କେମିତି ବିଚିତ୍ର । ସେ କ'ଣ ନେଇଛି ? ଗୋଟେ ସୂତାଗୋଲି, ଗୋଟେ ପେପର୍‌ୱେଟ୍, ଆଉ ଏହିଭଳି ଆଉ କେତେକ ଜିନିଷ ।''

ମିଷ୍ଟର କନିଙ୍ଗ୍‌ହାମ୍ କହିଲେ, ''ଦେଖନ୍ତୁ ! ଆମେ ଆପଣଙ୍କୁ ସବୁ ପ୍ରକାରେ ସାହାଯ୍ୟ କରିବୁ । ଆପଣ କିମ୍ବା ଇନିସ୍‌ପେକ୍ଟର ଯାହା ନିର୍ଦ୍ଦେଶ ଦେବେ ତା' ନିଶ୍ଚୟ କରାଯିବ ।''

ହୋମ୍‌ସ କହିଲେ, ''ପ୍ରଥମ କାମ ହେଲା, ମୁଁ ଭାବିଛି ଆପଣ ଆପଣଙ୍କ ତରଫରୁ ଗୋଟେ ପୁରସ୍କାର ଘୋଷଣା କରିଦିଅନ୍ତୁ, କାରଣ ସରକାରଙ୍କ ତରଫରୁ ପୁରସ୍କାର ଘୋଷଣା କରାଯିବାକୁ ଡେରି ହୋଇପାରେ । ମୁଁ ଫର୍ମଟା ଲେଖିଆଣିଛି । ଆପଣ ଯଦି କିଛି ମନେ ନ କରନ୍ତି, ଏଥିରେ ଦସ୍ତଖତ କରିଦିଅନ୍ତୁ । ପଚାଶ ପାଉଣ୍ଡ ପୁରସ୍କାର ଘୋଷଣା ଯଥେଷ୍ଟ ହେବ ବୋଲି ମୁଁ ଭାବୁଛି ।

''ମୁଁ ପାଞ୍ଚଶହ ପାଉଣ୍ଡ ବି ଦେବାକୁ ରାଜି ଅଛି ।''

ହୋମ୍‌ସ କାଗଜଖଣ୍ଡ ଆଉ ପେନ୍‌ସିଲ୍‌ଟା ବଢ଼ାଇଦେଲେ । କନିଙ୍ଗ୍‌ହାମ୍ କାଗଜଟା ଉପରେ ଆଖି ବୁଲାଇନେଇ କହିଲେ, ''ଲେଖାଟା ତ ପୂରା ଠିକ୍ ନାହିଁ ।''

''ମୁଁ ତରତରରେ ଏଟା ଲେଖିଦେଇଛି ।''

''ଏଇ ଦେଖନ୍ତୁ, ଆପଣ ଆରମ୍ଭରୁ ଲେଖିଛନ୍ତି, ''ଗଲା ମଙ୍ଗଳବାର ରାତି ଗୋଟାଏ ବାଜିବାକୁ ପନ୍ଦର ମିନିଟ୍ ଥିବାବେଳେ ଡକାୟତଦ୍ୱାରା....'' ଇତ୍ୟାଦି, କିନ୍ତୁ ପ୍ରକୃତରେ ବାରଟା ବାଜିବାକୁ ପନ୍ଦର ମିନିଟ୍ ଥିଲା ।''

ହୋମ୍‌ସଙ୍କର ଏ ଭୁଲଯୋଗୁଁ ମୋ ମନରେ ବଡ଼ କଷ୍ଟ ହେଲା । ମୁଁ ଜାଣେ, ହୋମ୍‌ସ ମଧ୍ୟ ସେଥିପାଇଁ ଦୁଃଖ କରିଥିବେ । ଯେ କୌଣସି କଥାରେ ପୂରା

ସଠିକ୍ ହେବା ତାଙ୍କର ବିଶେଷତ୍ୱ; କିନ୍ତୁ ନିକଟରେ ସେ ଯେଉଁ ବେମାର ପଡ଼ିଥିଲେ, ସେଇଥିରେ ତାଙ୍କର ଏ ଦୁର୍ବଳତା ଆସିଯାଇଥିଲା । ଏ ଘଟଣାରୁ ମୁଁ ଜାଣିଲି ଯେ ସେ ପୂରା ଭଲ ହୋଇନାହାନ୍ତି । ହୋମ୍‌ସ କ୍ଷଣକପାଇଁ ଟିକିଏ ବିଚଳିତ ହୋଇଗଲେ । ଇନିସ୍‌ପେକ୍ଟର ଆଶ୍ଚର୍ଯ୍ୟରେ ଆଖି ତରାଟି ଚାହିଁରହିଲେ । ଆଲେକ୍ କନିଙ୍ଗ୍‌ହାମ୍ ଠୋ ଠୋ ହୋଇ ହସି ଉଠିଲେ; କିନ୍ତୁ ବୁଢ଼ା କନିଙ୍ଗ୍‌ହାମ୍ ଭୁଲଟା ସଂଶୋଧନ କରିଦେଇ କାଗଜଟା ହୋମ୍‌ସଙ୍କୁ ଫେରାଇଦେଲେ । ତା'ପରେ କହିଲେ, ''ଶୀଘ୍ର ଏଟା ଖବରକାଗଜରେ ଛପାଇ ଦିଅନ୍ତୁ । ମୁଁ ଭାବୁଛି, ଆପଣଙ୍କର ଏ କଳ୍ପନା ଖୁବ୍ ଚମତ୍କାର ।''

ହୋମ୍‌ସ କାଗଜଖଣ୍ଡ ଯତ୍ନରେ ପକେଟ୍‌ରେ ପୂରାଇ କହିଲେ, ''ଏଥର ଆମେ ସମସ୍ତେ ଘରଟାର ଚାରିଆଡ଼େ ବୁଲି ଦେଖିନେଲେ ଭଲହେବ । ଏଇ ବିଚିତ୍ର ଡକାୟତ ପ୍ରକୃତରେ କିଛି ଜିନିଷ ନେଇଛି କି ନାହିଁ ସଠିକ୍ ଭାବେ ଦେଖିନେବା ।''

ଘର ଭିତରକୁ ଯିବାଆଗରୁ ହୋମ୍‌ସ ଯେଉଁ ଦରଜାଟା ଭଙ୍ଗା ହୋଇଥିଲା, ସେଟା ଭଲରକମ ପରୀକ୍ଷା କରି ଦେଖିନେଲେ । ଏଟା ପରିଷ୍କାର ଜଣାଗଲା ଯେ ଗୋଟେ ବଡ଼ ଛୁରୀ କିମ୍ବା ବଟାଳି ପୂରାଇ ତାଲାଟିକୁ ଭଙ୍ଗାଯାଇଥିଲା । କାଠ ଦେହରେ ବି ଖଣ୍ଡିଆ ଚିହ୍ନ ଆମେ ଦେଖିଲୁ । ହୋମ୍‌ସ ପଚାରିଥିଲେ, ''ଆପଣ ଦରଜାରେ ଧଡ଼ା ବ୍ୟବହାର କରନ୍ତି ନାହିଁ ?''

''ସେଟା କେବେହେଲେ ଦର୍କାର ହୋଇ ନଥିଲା ।''

''ଆପଣଙ୍କର କୁକୁର ନାହିଁ ?''

''ଅଛି, କିନ୍ତୁ ସେ ଘରର ଆରପାଖେ ଚେନ୍‌ରେ ବନ୍ଧାହୁଏ ।''

''ଚାକରମାନେ କେତେବେଳେ ଶୋଇବାକୁ ଯାଆନ୍ତି ?''

''ପ୍ରାୟ ଦଶଟାବେଳେ ।''

''ତା' ହେଲେ ଉଇଲିୟମ୍ ବି ସେତିକିବେଳେ ଶୋଇବାକୁ ଯାଉଥିବ ?''

''ହଁ !''

''ତେବେ ସେଇ ନିର୍ଦ୍ଦିଷ୍ଟ ରାତିରେ ସେ ଶୋଇ ନଥିବାଟା ନିଶ୍ଚୟ ଅସ୍ୱାଭାବିକ । ଏଥର ଆପଣ ଯଦି ଆମକୁ ସବୁ ଘରଗୁଡ଼ା ଦେଖାଇଦେବେ, ତେବେ ମୁଁ ଖୁସିହେବି ।''

ପଥରବିଛା ରାସ୍ତାର ଗୋଟେ ପାଖେ ରୋଷେଇଘର । ରାସ୍ତା ମୁଣ୍ଡରେ କାଠର ଗୋଟେ ଶିଡ଼ି । ସେଇବାଟେ ଯାଇ ଆମେ ଉପର ମହଲାରେ ପହଞ୍ଚିଲୁ । ହୋମ୍‌ସ ସବୁ ଜିନିଷ ଖୁବ୍ ମନଦେଇ ଦେଖୁଥାନ୍ତି । ତାଙ୍କ ମୁହଁର ଢଙ୍ଗରୁ ମୁଁ ଜାଣିପାରିଲି ସେ କିଛି ଟେର୍ ପାଇଲେଣି । ମିଷ୍ଟର କନିଙ୍ଗ୍‌ହାମ୍ ଅଧୈର୍ଯ୍ୟ ହୋଇ କହିଉଠିଲେ, ''ଦେଖନ୍ତୁ ଆଜ୍ଞା ' ଏ ଘର ସବୁ ଦେଖିବା ମୋଟେ ଦର୍କାର ନାହିଁ । ସେଇଟା ମୋ ଶୋଇବାଘର, ଆଉ ତା' ପାଖଟା ମୋ ପୁଅର । ତେଣୁ ଡକାୟତଟା ଏଠିକି ଆସିବ ଅଥଚ ଆମେ ଜାଣିପାରିବୁନାହିଁ, ଏଇଟା କେତେଦୂର ସମ୍ଭବ ଆପଣ ବିଚାର କରନ୍ତୁ ।''

ତାଙ୍କ ପୁଅ ଗୋଟେ ବେଖାତିରିଆ ହସ ହସି କହିଲେ, ''ଆପଣ ବରଂ ଡକାୟତକୁ ଧରିବା ପାଇଁ ଅନ୍ୟ ଦିଗରେ ଚେଷ୍ଟା କରନ୍ତୁ ।''

''ତଥାପି ମୋତେ ଟିକିଏ ସୁବିଧା ଦିଅନ୍ତୁ । ଉଦାହରଣସ୍ୱରୂପ ମୁଁ ଦେଖିବାକୁ ଚାହେ, ଶୋଇବାଘର ଝରକାବାଟେ ସାମନା ପାଖ କେତେଦୂରଯାଏ ଦେଖାଯାଉଛି ।'' ଗୋଟେ ବଖରା ଘରର ଦରଜା ଖୋଲିଦେଇ ସେ ପୁଣି କହିଲେ, ''ମୁଁ ଭାବୁଛି ଏଇଟା ବୋଧହୁଏ ଆପଣଙ୍କ ପୁଅଙ୍କ ଶୋଇବାଘର, ଆଉ ତା' ପାଖଟା ତାଙ୍କ ଡ୍ରେସିଂରୁମ୍ (ପୋଷାକଘର) । ସେଇଠି ବସି ସେ ସିଗାରେଟ୍ ପିଉଥିଲେ, ଆଉ ସେତିକିବେଳେ ଚିତ୍କାର ଶୁଣିପାରିଲେ । ସେ ବଖରାର ଝରକାଟା କୋଉ କଡ଼କୁ ?'' କହୁ କହୁ ସେ ଡ୍ରେସିଂରୁମ୍ ଆଡ଼କୁ ଯାଇ ଦରଜା ଖୋଲି ଘରଟାରେ ଆଖିବୁଲାଇ ଆଣିଲେ ।

ହସି ହସି ମିଷ୍ଟର୍ କନିଙ୍ଗ୍‌ହାମ୍ କହିଲେ, ''ଆପଣଙ୍କ ମନବୋଧ ହେଲା ବୋଧହୁଏ ?''

''ଧନ୍ୟବାଦ । ମୋର ଯାହା ଦେଖିବାର ମୁଁ ଦେଖିନେଲି ।''

''ଯଦି ଦର୍କାର ମନେ କରୁଛନ୍ତି ତେବେ ମୋ ଶୋଇବା ବଖରାକୁ ଯିବା ।''

''ହଁ, ଯଦି ଆପଣଙ୍କର କିଛି ଅସୁବିଧା ନଥାଏ ।''

ମିଷ୍ଟର୍ କନିଙ୍ଗ୍‌ହାମ୍ ଆମକୁ ତାଙ୍କ ଶୋଇବା ବଖରାକୁ ନେଇଗଲେ । ସାଧାରଣ ଘରବଖରାଏ, ଆଉ ସାଜସଜ୍ଜା ବି ଖୁବ୍ ସାଧାରଣ । ଆମେ ଝରକା ପାଖକୁ ଯାଉ ଯାଉ ହୋମ୍‌ସ ଟିକିଏ ପଛୁଆ ରହିଗଲେ । ସେ ଆଉ ମୁଁ ସବା ପଛରେ । ଖଟ ପାଖରେ ଛୋଟ ଛୋଟ ଟେବୁଲ୍ । ତା' ଉପରେ ଗୋଟେ ପ୍ଲେଟ୍‌ରେ କେତେଟା କମଳା ଆଉ ଗୋଟେ କାଚ ଗ୍ଲାସରେ ପାଣି ଥୁଆ

ହୋଇଥାଏ । ଆମେ ସେଇପାଖେ ଗଲାବେଳେ ହୋମ୍‌ସ ଜାଣି ଜାଣି ମୋ ଉପରକୁ ଆଉଜିପଡ଼ି ଟେବୁଲ୍‌ଟାକୁ ଗୋଡ଼ରେ ଗଡ଼େଇଦେଲେ । ମୁଁ ଯା ଦେଖି ଆଶ୍ଚର୍ଯ୍ୟ ହୋଇଗଲି । ଗ୍ଲାସଟା ଟିକି ଟିକି ହୋଇ ଭାଙ୍ଗିଗଲା, ଆଉ କମଳାଗୁଡ଼ା ଚାରିଆଡ଼କୁ ଗଡ଼ିଗଲା ।

ଖୁବ୍ କଅଁଳ ଭାବରେ ହୋମ୍‌ସ କହିଲେ, ''ଆହା, କ'ଣ କଲ ୱାଟ୍‌ସନ୍ ! ଗାଲିଚାଟା ପୂରା ଅପରିଷ୍କାର ହୋଇଗଲା ।''

ମୁଁ କିଛି ବୁଝିପାରିଲି ନାହିଁ । ଟିକିଏ ଘାବରେଇଗଲି । ତା'ପରେ ଲଇଁପଡ଼ି ତଳୁ ଫଳଗୁଡ଼ା ଗୋଟେଇବାରେ ଲାଗିଲି । ବୁଝିଲି କୌଣସି କାରଣରୁ ମୋ ବନ୍ଧୁ ଦୋଷଟା ମୋ ମୁଣ୍ଡରେ ଲଦି ଦେଉଛନ୍ତି । ମୋ ସାଥିରେ ଅନ୍ୟମାନେ ବି ଫଳ ଆଉ ଭଙ୍ଗା କାଚ ଗୋଟାଇବାରେ ଲାଗିଗଲେ । ଟେବୁଲ୍‌ଟାକୁ ପୁଣି ଠିଆ କରି ରଖିଦେଲୁ । ହଠାତ୍ ଇନିସ୍‌ପେକ୍ଟର କହିଉଠିଲେ, ''ଆରେ ସେ ଗଲେ କୁଆଡ଼େ ?'' ଦେଖିଲାବେଳକୁ ହୋମ୍‌ସ ସେଠି ନାହାନ୍ତି । ଆଲେକ୍ କନିଙ୍ଗହାମ୍ କହିଲେ, ''ଟିକିଏ ଅପେକ୍ଷା କରନ୍ତୁ । ମୋ ମତରେ ତାଙ୍କର ମୁଣ୍ଡ ଠିକ୍ ନାହିଁ । ମୋ ସାଥିରେ ଆସନ୍ତୁ ବାପା, ଦେଖିବା ସେ କୁଆଡ଼େ ଗଲେ ।'' ସେ ଦୁହେଁ ଝଡ଼ପରି ଘରୁ ବାହାରିଗଲେ । ଇନିସ୍‌ପେକ୍ଟର କର୍ଣ୍ଣେଲ୍ ଆଉ ମୁଁ ବୋକାଙ୍କ ପରି ପରସ୍ପର ମୁହଁକୁ ଚାହିଁ ରହିଲୁ । ଟିକିଏ ପରେ ଇନିସ୍‌ପେକ୍ଟର କହିଲେ, ''ସତ କହୁଛି, ମୁଁ ବି ଆଲେକ୍ କନିଙ୍ଗହାମ୍‌ଙ୍କ ସାଥିରେ ଏକମତ । ଏଟା ତାଙ୍କ ବେମାରିର ପ୍ରତିକ୍ରିୟା ହୋଇଥିବ; କିନ୍ତୁ ମୋର ଅନୁମାନ.... ।''

ତାଙ୍କ କଥା ଅଧାରେ ରହିଗଲା । ହଠାତ୍ ଚିତ୍କାର ଶୁଭିଲା, ''ଧାଇଁଆସ, ଧାଇଁଆସ, ମରିଗଲି ।'' ସେଟା ହୋମ୍‌ସଙ୍କ କଣ୍ଠସ୍ୱର ବୋଲି ମୁଁ ଜାଣିପାରିଲି । ଦେହଟା ମୋର ଭୟରେ ଥରିଗଲା । ପାଗଳପରି ମୁଁ ବାହାରକୁ ଧାଇଁଆସିଲି । ଆମେ ପ୍ରଥମେ ଯେଉଁ ବଖରାକୁ ଯାଇଥିଲୁ ତାରି ଭିତରୁ ଗଁ ଗଁ ଶବ୍ଦ ଶୁଭୁଥାଏ । ମୁଁ ଘର ଭିତରକୁ ପଶିଯାଇ ସିଧା ଡ୍ରେସିଂରୁମକୁ ଧାଇଁଗଲି । କନିଙ୍ଗହାମ୍ ବାପପୁଅ ହୋମ୍‌ସଙ୍କୁ ମାଡ଼ି ବସିଥାନ୍ତି । ପୁଅ ତାଙ୍କ ତଣ୍ଟିକୁ ଚିପି ଧରିଥାଏ, ଆଉ ବାପ ତାଙ୍କ ହାତକୁ ମୋଡ଼ି ଧରିଥାନ୍ତି । ଆମେ ତିନିହେଁ ତାଙ୍କ ଉପରକୁ ଝାମ୍ପିପଡ଼ି ହୋମ୍‌ସଙ୍କୁ ତାଙ୍କ କବଳରୁ ମୁକୁଳାଇଲୁ । ସେ ଖୁବ୍ ମଉନ ଆଉ ଦୁର୍ବଳ ଦେଖାଯାଉଥାନ୍ତି । ଥରି ଥରି ସେ ଉଠି ଠିଆହେଲେ । ତା'ପରେ ଧଇଁସଇଁ ହୋଇ କହିଲେ, ଏମାନଙ୍କୁ ଆରେଷ୍ଟ କର ଇନିସ୍‌ପେକ୍ଟର ।''

''କେଉଁ ଅପରାଧରେ ?''

''ସେମାନଙ୍କ ଘୋଡ଼ାସଇସ ଉଇଲିୟମ୍‌କୁ ହତ୍ୟା କରିଥିବା ଅପରାଧରେ ।''

ଇନିସ୍‌ପେକ୍ଟର ବିସ୍ମୟରେ ବୋକାଙ୍କ ପରି ହୋମ୍‌ସଙ୍କ ମୁହଁକୁ ଚାହିଁରହି କହିଲେ, ''ଆପଣ ରହସ୍ୟ କରୁନାହାନ୍ତି ତ ମିଷ୍ଟର୍ ହୋମ୍‌ସ ?''

''ଆହା, ମୋଟେ ନୁହେଁ । ସେମାନଙ୍କ ମୁହଁକୁ ଚାହଁ ।''

''କୌଣସି ଲୋକ ମୁହଁରେ ଅପରାଧ ମାନିଯିବାର ଏମିତି ଲକ୍ଷଣ ମୁଁ ପୂର୍ବରୁ ଦେଖିନଥିଲି । ବାପ ଚକିତ ଆଉ ଅଚେତ ପରି ହୋଇଗଲେ । ପୁଅର ଦମ୍ଭ ଅଭିମାନ ସବୁ କୁଆଡ଼େ ଚାଲିଗଲା । ତା'ର ସୁନ୍ଦର ଚେହେରା ଚାହୁଁ ଚାହୁଁ ବଣଜନ୍ତୁ ପରି ଭୟଙ୍କର ହୋଇଉଠିଲା । ଇନିସ୍‌ପେକ୍ଟର କିଛି ନ କରି ଦରଜା ପାଖକୁ ଯାଇ ହୁଇସିଲ୍ ବଜାଇଦେଲେ । ସାଙ୍ଗେ ସାଙ୍ଗେ ଦି'ଜଣ କନଷ୍ଟେବଲ୍ ଆସି ପହଞ୍ଚିଗଲେ । ତା'ପରେ ସେ କହିଲେ, ''ମୋର ଅନ୍ୟ କିଛି ପନ୍ଥା ନାହିଁ ମିଷ୍ଟର୍ କନିଙ୍ଗ୍‌ହାମ୍ ! ହୁଏତ ଏସବୁ ମିଛ ବୋଲି ପ୍ରମାଣିତ ହୋଇପାରେ; କିନ୍ତୁ ବର୍ତ୍ତମାନ ପରିସ୍ଥିତିରେ... ।'' ତାଙ୍କ କଥା କଥା ମୁହଁରେ ରହିଗଲା । ସାନ କନିଙ୍ଗ୍‌ହାମ୍ ଗୋଟାଏ ରିଭଲ୍‌ଭର୍ ଧରି ମାରିବା ଉପରେ । ତା ଦେଖି ଇନିସ୍‌ପେକ୍ଟର ଜୋର୍‌ରେ ତାଙ୍କ ହାତକୁ ଗୋଇଠାଏ ମାରିଦେଲେ । ରିଭଲ୍‌ଭର୍‌ଟା ତଳେ ପଡ଼ିଗଲା । ହୋମ୍‌ସ ଚଟ୍‌କରି ସେଟାକୁ ଗୋଡ଼ରେ ମାଡ଼ିଧରି କହିଲେ, ''ଏଟା ନେଇ ପାଖରେ ରଖନ୍ତୁ ଇନିସ୍‌ପେକ୍ଟର - ଅଦାଲତରେ କେଶ୍ ବିଚାର ବେଳେ ଏଟା ଦର୍କାରରେ ଆସିବ, କିନ୍ତୁ ଆମେ ପ୍ରକୃତରେ ଏଇଟା ଖୋଜୁଥିଲେ ।'' ସେ ଖଣ୍ଡେ ଲୋଚାକୋଚା କାଗଜ ହାତରେ ଧରି ଦେଖାଇଲେ ।

''ସେ ଚିଠିର ଅନ୍ୟ ଅଂଶଖଣ୍ଡକ ?'' ଇନିସ୍‌ପେକ୍ଟର କହିଉଠିଲେ ।

''ଅନ୍ତତଃ ସେଇଆ ।''

''ଏ ଖଣ୍ଡ କେଉଁଠି ଥିଲା ?''

''ଯେଉଁଠି ଥିବ ବୋଲି ମୋର ଦୃଢ଼ବିଶ୍ୱାସ ଥିଲା । ମୁଁ ସବୁକଥା ଶୀଘ୍ର ଆପଣମାନଙ୍କ ଆଗରେ ପରିଷ୍କାର କରିଦେବି । ମୁଁ ଭାବୁଛି କର୍ଣ୍ଣେଲ୍, ଆପଣ ଆଉ ୱାଟ୍‌ସନ୍ ଏଥର ଫେରିଯାଆନ୍ତୁ । ମୁଁ ଘଣ୍ଟାଏ ପରେ ଯିବି । ଇନିସ୍‌ପେକ୍ଟର

ଆଉ ମୁଁ ବନ୍ଦୀଙ୍କ ସାଥିରେ କେତେ ପଦ କଥାବାର୍ତ୍ତା କରିବୁ । ଖାଇଲାବେଳକୁ ମୁଁ ନିଶ୍ଚୟ ପହଞ୍ଚିବି ।''

ତାଙ୍କ କଥା ଅନୁସାରେ ଠିକ୍ ଗୋଟାକବେଳକୁ ହୋମ୍‌ସ ଆସି ପହଞ୍ଚିଲେ । ତାଙ୍କ ସାଥିରେ ଜଣେ ବୟସ୍କ ଭଦ୍ରଲୋକ । ମୋତେ ତାଙ୍କର ପରିଚୟ ଜଣାଇ ଦିଆଗଲା । ସେ ମିଷ୍ଟର ଆକ୍ଟନ୍ । ପ୍ରଥମ ଡକାୟତି ତାଙ୍କ ଘରେ ହୋଇଥିଲା । ହୋମ୍‌ସ କହିଲେ, ମୁଁ ଆପଣଙ୍କ ଆଗରେ ସବୁକଥା ବୁଝାଇ କହିଲାବେଳେ ମିଷ୍ଟର ଆକ୍ଟନ୍ ଏଠି ରହିଲେ ଭଲହେବ ବୋଲି ଭାବିଲି; କାରଣ ଘଟଣାଟାର ଟିକିନିଖି ବିବରଣୀ ଶୁଣିବାକୁ ତାଙ୍କର ଆଗ୍ରହ ହେବା ସ୍ୱାଭାବିକ । ହେଲେ କର୍ଣ୍ଣେଲ୍ ମୋ ସାଥିରେ ସେ ଗୋଳମାଳ ଭିତରେ ଘଣ୍ଟାଏ କାଳ ରହିବା ଯୋଗୁଁ ଆପଣ ବୋଧହୁଏ ଅନୁତାପ କରୁଥିବେ ।''

ହସି ହସି କର୍ଣ୍ଣେଲ୍ କହିଲେ, ''ଠିକ୍ ତାର ଓଲଟା । ଆପଣଙ୍କ କାମର ପଦ୍ଧତି ଦେଖିବା ମୋର ବଡ଼ ସୌଭାଗ୍ୟ ବୋଲି ମୁଁ ମନେ କରୁଛି । ମୁଁ ସ୍ୱୀକାର କରୁଛି, ଆପଣଙ୍କ କାର୍ଯ୍ୟପଦ୍ଧତି ମୋ କଳ୍ପନାର ବାହାରେ । ଆପଣ କେମିତି ଏହା କରିପାରିଲେ ମୁଁ ମୋଟେ ବୁଝିପାରୁନାହିଁ । ଏଯାଏ ବି ମୁଁ କୌଣସି ସୂତ୍ର ଦେଖି ପାରୁନାହିଁ ।''

''ମୋ ବିବରଣୀ ଆପଣଙ୍କୁ କୁହୁକ ପରି ଲାଗିପାରେ; କିନ୍ତୁ ମୋ ପଦ୍ଧତିର କୌଣସି କଥା ୱାଟ୍‌ସନ୍‌ଙ୍କ ପାଖରେ କିବା ଅନ୍ୟ କୌଣସି ଆଗ୍ରହୀ ବନ୍ଧୁଙ୍କ ପାଖରେ ଲୁଚାଇ ରଖିବା ମୋର ଅଭ୍ୟାସ ନୁହେଁ । କୌଣସି ଘଟଣାର ଅନୁସନ୍ଧାନ କରିବାରେ ସବୁଠୁ ବଡ଼କଥା ହେଲା କେଉଁ କେଉଁ ପଏଣ୍ଟ ଗୁରୁତ୍ୱପୂର୍ଣ୍ଣ, ଆଉ କେଉଁ କେଉଁ ପଏଣ୍ଟ ଆନୁଷଙ୍ଗିକ ତା' ବାଛି ଠିକ୍ କରିବା । ତା' ନହେଲେ ଆପଣଙ୍କର ଲକ୍ଷ୍ୟ ଆଉ ଶକ୍ତି ଏକ ଦିଗକୁ ନ ଯାଇ ଚାରିଆଡ଼େ ବିକ୍ଷିପ୍ତ ହୋଇଯିବ । ଏ କେଶ୍‌ର ଚାବି ମୃତଲୋକ ହାତରୁ ମିଳିଥିବା କାଗଜଖଣ୍ଡିକରେ ଅଛି ବୋଲି ପ୍ରଥମରୁ ମୁଁ ନିଶ୍ଚିତ ହୋଇଗଲି । ସେ କଥା କହିବା ଆଗରୁ ଆଉ ଗୋଟାଏ କଥା କହି ରଖୁଛି । ଯଦି ଆଲେକ୍ କନିଙ୍ଗହାମ୍‌ଙ୍କ ଉକ୍ତି ସତ ହୁଏ, ଆଉ ହତ୍ୟାକାରୀ ଉଇଲିୟମ୍‌କୁ ଗୁଳି ମାରିବା ସାଙ୍ଗେ ସାଙ୍ଗେ ପଳାଇଯାଇଥାଏ, ତେବେ ମୃତଲୋକ ହାତରୁ କାଗଜଖଣ୍ଡ ସେ କେବେହେଲେ ନେଇ ନଥିବ । ଯଦି ସେ ନେଇ ନଥାଏ ତେବେ ଆଲେକ୍ କନିଙ୍ଗହାମ୍ ସେ ଖଣ୍ଡ ନିଶ୍ଚୟ ନେଇଥିବ । କାରଣ ବଢା କନିଙ୍ଗହାମ ତଳକ ଆସିଲାବେଳକ

ଚାକର-ବାକର ସବୁ ସେଠି ପହଞ୍ଚି ସାରିଥିଲେ । ଏ ପର୍ଏଣ୍ଟା ଅତି ସରଳ; କିନ୍ତୁ ଇନିସ୍‌ପେକ୍ଟରଙ୍କ ପ୍ରଥମରୁ ଧାରଣା ଯେ ଏହା ଡକାୟତଦଳର କାମ । ତେଣୁ ସେ ଏ ପଏଣ୍ଟା ଉପରେ ନଜର ଦେଇନଥିଲେ । ମୁଁ କିନ୍ତୁ ମନେ ମନେ କିଛି ଠିକ୍ କରି ନ ନେଇ ଘଟଣା ଯେଉଁଆଡ଼କୁ ବାଟ ଦେଖାଇଲା, ସେ ଆଡ଼କୁ ଚାଲେ । ଏ କେଶ୍‌ର ଅନୁସନ୍ଧାନରେ ପ୍ରତ୍ୟେକ ସ୍ଥଳରେ ଆଲେକ୍ କନିଙ୍ଗହାମ୍‌ର ଭୂମିକାକୁ ମୁଁ ସନ୍ଦେହ କରୁଥିଲି ।

''ତା' ପରେ ଇନିସ୍‌ପେକ୍ଟର୍ ଆମକୁ ଦେଇଥିବା କାଗଜଖଣ୍ଡ ମୁଁ ଖୁବ୍ ଭଲଭାବେ ପରୀକ୍ଷା କଲି । ସାଙ୍ଗେ ସାଙ୍ଗେ ଜାଣିଲି, ତାହା କୌଣସି ଗୁରୁତ୍ୱପୂର୍ଣ୍ଣ ଲେଖାରୁ ଖଣ୍ଡେ । ଏଥିରେ କିଛି ବିଶେଷତ୍ୱ ଥିବାର ଆପଣ ଲକ୍ଷ୍ୟ କରି ପାରୁନାହାନ୍ତି ?''

''ଲେଖାଟାର ଅକ୍ଷରଗୁଡ଼ାକରେ ସାମ୍ୟ ନଥିଲା ପରି ଜଣାଯାଉଛି ।''

''ସେତିକି ନୁହେଁ ଆଜ୍ଞା ! ଏଟା ଯେ ଦି'ଜଣ ଲୋକ ଲେଖିଛନ୍ତି; ସେଥିରେ ଟିକିଏ ହେଲେ ସନ୍ଦେହ ନାହିଁ । ଜଣେ ଗୋଟେ ଶବ୍ଦ ଲେଖିଲା ପରେ ଆଉ ଜଣେ ଗୋଟେ ଲେଖିଛି । ବିଭିନ୍ନ ଶବ୍ଦର ବିଭିନ୍ନ ଅକ୍ଷରକୁ ତୁଳନା କଲେ ଆପଣ ଏକଥା ଜାଣିପାରିବେ । ତା'ଛଡ଼ା ଶବ୍ଦଗୁଡ଼ାକରୁ ଜାଣି ହେଉଛି ଯେ ଜଣେ ବୁଢ଼ା ଆଉ ଜଣେ ଯୁବକ ଏ ଲେଖାଟା ଲେଖିଛନ୍ତି । ଯୁବକର ଲେଖା ବୁଢ଼ାର ଲେଖାଠାରୁ ବେଶି ଗାଢ଼ ହୋଇଛି ।''

କର୍ଣ୍ଣେଲ୍ ଚିତ୍କାର କରି ଉଠିଲେ, ''ହେ ଭଗବାନ୍ ! ଏଥର ଘଟଣାଟା ଦିନର ଆଲୁଅପରି ଉଜ୍ଜ୍ୱଳ ହୋଇଉଠିଛି । ତେବେ ଦି'ଜଣ ଲୋକ ଏମିତି ଭାବରେ ଗୋଟେ ଚିଠି ଲେଖିବାର କାରଣ କ'ଣ ହୋଇପାରେ ? ''

''କାରଣ କାମଟା ନିଶ୍ଚୟ ଖରାପ । ସେଥିରୁ ଜଣେ ଅନ୍ୟଜଣକୁ ବିଶ୍ୱାସ କରୁ ନଥିଲା । ତେଣୁ ସେ ଠିକ୍ କଲା; ଯାହା କିଛି ହେବ, ସେଥିରେ ଦୁଇଜଣଙ୍କର ହାତ ରହିବ । ସେ ଦୁଇଜଣଙ୍କ ଭିତରୁ ଗାଢ଼ଅକ୍ଷର ଲେଖିଲାବାଲା ହେଲା ମୂଳକର୍ତ୍ତା ।''

''ଆପଣ ସେ କଥା ଜାଣିଲେ କେମିତି ?''

''ଲେଖାଗୁଡ଼ାକ ତୁଳନା କଲେ ଆମେ ସେଟା ଅନୁମାନ କରିପାରିବା; କିନ୍ତୁ ତା' ଛଡ଼ା ଅନ୍ୟ ପ୍ରମାଣ ବି ରହିଛି । ଏ କାଗଜଖଣ୍ଡ ଭଲଭାବେ ପରୀକ୍ଷା କଲେ ଆପଣ ଜାଣିପାରିବେ ଯେ ଗାଢ଼ ଅକ୍ଷରଗୁଡ଼ା ପ୍ରଥମେ ଲେଖାହୋଇଛି ।

ତା'ପରେ ଖାଲିଥିବା ଜାଗାରେ ଅନ୍ୟଜଣକ ଲେଖିଛି । କେତେକ ଜାଗାରେ ଖାଲିଥିବା ଜାଗା ଗୋଟେ ଶବ୍ଦ ଲେଖିବା ପାଇଁ ଯଥେଷ୍ଟ ନୁହେଁ । ତେଣୁ ଦ୍ୱିତୀୟ ଲୋକ ତା' ଶବ୍ଦଗୁଡ଼ା ଗେଞ୍ଜ କରି ଲେଖିଛି । ତେଣୁ ଯେଉଁ ଲୋକ ପ୍ରଥମେ ଲେଖିଛି, ସେ ହେଲା ଏ ଯୋଜନାର ମୂଳ ।''

''ଚମତ୍କାର !'' ମିଷ୍ଟର ଆକ୍ଟନ୍ କହିଉଠିଲେ ।

''କିନ୍ତୁ ଏଗୁଡ଼ା ଅତି ସାଧାରଣ କଥା । ଏଥର ଆମେ ଆଉ ଗୋଟେ ପଏଣ୍ଟ ଦେଖିବା, ଯାହା ଖୁବ୍ ଗୁରୁତ୍ୱପୂର୍ଣ୍ଣ । ଆପଣମାନେ ହୁଏତ ଜାଣି ନ ଥିବେ, ବିଶେଷଜ୍ଞମାନେ ଜଣେଲୋକର ଲେଖାରୁ ତାର ଠିକ୍ ବୟସ ଜାଣିପାରନ୍ତି । ଏ କେଶ୍‌ରେ ଜଣକର ପରିଷ୍କାର ଲେଖା ଏବଂ ଆଉ ଜଣକର ଦୁର୍ବଳ ଲେଖାରୁ ମୁଁ ଜାଣିଲି ଯେ ଜଣେ ଯୁବକ, ଆଉ ଜଣେ ବୟସ୍କ । ଏହା ବ୍ୟତୀତ ଆଉ ଗୋଟେ ଅଧିକ ଗୁରୁତ୍ୱପୂର୍ଣ୍ଣ ପଏଣ୍ଟ ଅଛି । ଏହି ଦୁର୍ବଳ ହସ୍ତାକ୍ଷର ମଧ୍ୟରେ କେତେକ ସାମ୍ୟ ଅଛି । ଯେଉଁମାନଙ୍କର ରକ୍ତଗତ ସଂପର୍କ ଅଛି, ତାଙ୍କ ହସ୍ତାକ୍ଷରରେ ଏପରି ସାମ୍ୟ ଦେଖାଯାଏ । କାଗଜଖଣ୍ଡକରୁ ଏଇପରି ତେଇଶଟା ସାମ୍ୟ ମୁଁ ଲକ୍ଷ୍ୟ କଲି । ସେଥିରୁ ମୋ ମନରେ ଦୃଢ଼ ସନ୍ଦେହ ହେଲା ଯେ କନିଙ୍ଗହାମ୍ ବାପପୁଅ ଏ ଚିଠି ଲେଖିଛନ୍ତି । ଯା ପରେ ମୋର କାମ ହେଲା ଘଟଣାଟାକୁ ଭଲଭାବେ ପରୀକ୍ଷା କରିବା, ଆଉ ତା' ଆମକୁ କେତେଦୂର ସାହାଯ୍ୟ କରୁଛି ଦେଖିବା । ମୁଁ ଇନିସ୍‌ପେକ୍ଟରଙ୍କ ସାଥିରେ ସେଠିକି ଯାଇ ଯାହା ଦେଖିବାର ଦେଖିଲି । ମୃତଲୋକ ଦେହର କ୍ଷତରୁ ଜାଣିଲି, ରିଭଲ୍‌ଭର ଗୁଳିରେ ତା ପ୍ରାଣ ଯାଇଛି, ଆଉ ସେ ଗୁଳି ଚାରିଗଜ ଅଧିକ ଦୂରରୁ ମରାଯାଇଛି । ମୃତଲୋକର ଜାମାରେ ଗୁଳି ବାରୁଦର କଳା ଚିହ୍ନ ନାହିଁ । ତେଣୁ ଆଲେକ୍ କନିଙ୍ଗହାମ୍ ଯାହା କହିଲେ, ଦୁଇଜଣ ଧସ୍ତାଧସ୍ତି ହେଉଥିଲେ ଆଉ ସେତିକିବେଳେ ଜଣେ ଗୁଳିମାରିଛି, ସେଟା ପୂରା ମିଛ । ତା'ଛଡ଼ା ଆଉ ଗୋଟେ କଥା ବାପ ପୁଅ ଦି'ଜଣଯାକ ଗୋଟାଏ ଜାଗା ଦେଖାଇ କହିଲେ ଯେ, ଡକାୟତଟା ସେଇବାଟେ ବାଡ଼ ଡେଇଁ ପଳାଇଯାଇଛି । ସେ ଜାଗାରେ ବାଡ଼ ଆରପାଖେ ଗୋଟେ ଖାଲୁଆ ସନ୍ତସନ୍ତିଆ ଜାଗା ଅଛି । ସେ ଖାଲରେ କିନ୍ତୁ ଜୋତା ବା ପାଦଚିହ୍ନ କିଛି ନାହିଁ । ତେଣୁ ମୁଁ ପୂରା ନିଶ୍ଚିତ ହେଲି ଯେ ଏଠି ବି ବାପପୁଅ ଦି'ଜଣଯାକ ମିଛ କହିଛନ୍ତି । କେବଳ ସେତିକି ନୁହେଁ, ଘଟଣାସ୍ଥଳକୁ କେହି ଅଜଣା ଲୋକ ମୋଟେ ଆସିନାହିଁ ।

''ବର୍ତ୍ତମାନ ଏ ପ୍ରକାର ଅପରାଧର ଉଦ୍ଦେଶ୍ୟ କ'ଣ ମୋତେ ଚିନ୍ତା କରିବାକୁ ପଡ଼ିଲା । ସେଥିପାଇଁ ମୁଁ ମିଷ୍ଟର୍ ଆକ୍ଟନ୍‌ଙ୍କ ଘରେ ହୋଇଥିବା ମୂଳ ଡକାୟତିର ସମାଧାନ କରିବାକୁ ଚେଷ୍ଟାକଲି । କର୍ଣ୍ଣେଲ୍ କଥା ପ୍ରସଙ୍ଗରେ କହିଥିଲେ ଯେ ଆକ୍ଟନ୍ ଆଉ କନିଙ୍ଗ୍‌ହାମ୍‌ଙ୍କ ଭିତରେ ଗୋଟେ ମକଦ୍ଦମା ଚାଲିଛି । ହଠାତ୍ ମୋର ଧାରଣା ହେଲା ଯେ ଏ ମକଦ୍ଦମା ସଂକ୍ରାନ୍ତ କୌଣସି ଗୁରୁତ୍ୱପୂର୍ଣ୍ଣ ଦଲିଲ ଚୋରିକରି ଆଣିବା ପାଇଁ ସେମାନେ ଆପଣଙ୍କ ଲାଇବ୍ରେରି ଘରେ ପଶିଥିଲେ ।''

ମିଷ୍ଟର ଆକ୍ଟନ୍ କହିଉଠିଲେ, ''ଠିକ୍ ଠିକ୍ ଆଜ୍ଞା ! ସେଥିରେ କିଛି ସନ୍ଦେହ ନାହିଁ । ତାଙ୍କର ବର୍ତ୍ତମାନ ଜମିଦାରିର ଅଧା ଉପରେ ମୋର ନ୍ୟାଯ୍ୟ ଦାବି ଅଛି । ଯଦି ସେମାନେ ଗୋଟିଏ ଦଲିଲ ପାଇଯାଇଥାନ୍ତେ ତେବେ କେଶ୍‌ଟା ତାଙ୍କ ସପକ୍ଷରେ ଚାଲିଯାଇଥାନ୍ତା; କିନ୍ତୁ ଭାଗ୍ୟକୁ ସେ ଲେଖାଟା ମୋ ଓକିଲଙ୍କ ପାଖରେ ନିରାପଦରେ ଥିଲା ।''

ଅଳ୍ପ ହସି ହୋମ୍‌ସ କହିଲେ, ''ହଁ, ଠିକ୍ ଅଛି । ଏପରି ଚୋରି କରିବାକୁ ଚେଷ୍ଟା କରିବାଟା ଲଗାମଛଡ଼ା ଆଉ ବିପଦପୂର୍ଣ୍ଣ କାମ । ମୁଁ ଜାଣିପାରିଲି ଯେ ଏଥିରେ ଯୁବକ କନିଙ୍ଗ୍‌ହାମ୍‌ର ବେଶି ହାତଥିଲା । କିଛି ନ ପାଇ ସେମାନେ ସନ୍ଦେହ ଦୂର କରିବା ପାଇଁ ଏକୁ ଗୋଟେ ସାଧାରଣ ଡକାୟତି ବୋଲି ଦେଖାଇବାକୁ ଚେଷ୍ଟା କଲେ । ତେଣୁ ଯେଉଁଥିରେ ହାତ ପଡ଼ିଲା, ସେମିତି କେତେଟା ଜିନିଷ ନେଇ ଚାଲିଗଲେ । ଏଟା ବେଶ୍ ପରିଷ୍କାର ଜଣାଗଲା; କିନ୍ତୁ ଆହୁରି ଅନେକ କଥା ଅଜଣା ରହିଗଲା । ତେଣୁ ମୁଁ ଭାବିଲି ସେ ଚିଠିର ଅନ୍ୟ ଅଂଶଖଣ୍ଡ କେମିତି ପାଇବି । ମୁଁ ନିଶ୍ଚିତ ଥିଲି ଯେ ଆଲେକ୍ କନିଙ୍ଗ୍‌ହାମ୍ ହିଁ ମୃତଲୋକ ହାତରୁ ସେ ଖଣ୍ଡ ନେଇଯାଇଛି, ଆଉ ତା' ରାତିପିନ୍ଧା ପୋଷାକ ପକେଟରେ ସେଟା ପୁରାଇ ଦେଇଛି । ଆଉ କେଉଁଠି ବା ସେ ରଖିବ ? କେବଳ ପ୍ରଶ୍ନ ହେଲା ସେଟା ଏଯାଏ ତା' ପକେଟ୍‌ରେ ଅଛି କି ନାହିଁ । ତେଣୁ ଥରେ ଚେଷ୍ଟାକରି ଦେଖିବା ଦର୍କାର । ସେଇଥିପାଇଁ ଆମେ ସବୁ ଉପର ମହଲାକୁ ଗଲୁ ।

''ଆପଣଙ୍କର ନିଶ୍ଚୟ ମନେଥିବ, ଆମେ ରୋଷେଇଘର ବାଟପାଖେ ଠିଆ ହୋଇଥିବାବେଳେ କନିଙ୍ଗ୍‌ହାମ୍ ବାପପୁଅ ଆମ ପାଖକୁ ଆସିଲେ । ଏଇ ଚିଠି କାଗଜ କଥା ତାଙ୍କର ଯେମିତି ମନେ ନ ପଡ଼େ, ସେଟା ହେଲା ସବୁଠୁ

ବଡ଼ କଥା । ନଚେତ୍ ସେ ଅବିଳମ୍ବେ କାଗଜଖଣ୍ଡ ନଷ୍ଟ କରିଦେବେ । ଏଇ କାଗଜର ଗୁରୁତ୍ୱ ଇନିସ୍‌ପେକ୍ଟର୍ ତାଙ୍କୁ ପ୍ରାୟ କହିଦେଉଥିଲେ । ଭାଗ୍ୟକୁ ଠିକ୍ ସେତିକିବେଳେ ମୁଁ ଅଜ୍ଞାନ ହେଲାପରି ତଳେ ପଡ଼ିଗଲି, ଆଉ କଥାବାର୍ତ୍ତାଟା ବଦଳିଗଲା ।''

ହସି ହସି କର୍ଣ୍ଣେଲ୍ କହିଲେ, ''ତା'ହେଲେ ଆପଣ କହୁଛନ୍ତି ସେଟା ଆପଣଙ୍କର କେବଳ ଛଳନା, ଆଉ ଆମର ସବୁ ସହାନୁଭୂତି ଅକାରଣ ?''

ମୁଁ କହିଉଠିଲି, ''ତୁମ ବ୍ୟବସାୟ ଦୃଷ୍ଟିରୁ ଛଳନାଟା ବେଶ୍ ଚମତ୍କାର ହୋଇଥିଲା ।''

''ଏଇଟା ଗୋଟେ କଳା, ଅନେକ ସମୟରେ ଖୁବ୍ କାମରେ ଆସେ । ମୁଁ ପୁଣି ସୁସ୍ଥହେବା ପରେ କୌଣସି ଉପାୟରେ ବୁଢ଼ା କନିଙ୍ଗ୍‌ହାମ୍‌ଙ୍କ ଦ୍ୱାରା 'ବାରଟା' ଶବ୍ଦ ଲେଖାଇନେଲି । ଚିଠିରେ ଲେଖାଥିବା ଶବ୍ଦ ସହିତ ତାକୁ ତୁଳନା କରିବା ଥିଲା ମୋର ଲକ୍ଷ୍ୟ । ତା'ପରେ ଆମେ ଉପରକୁ ଗଲୁ । ସେଠି ଡ୍ରେସିଂରୁମ୍‌ରେ ଆଲେକ୍‌ର ରାତିପିନ୍ଧା ପୋଷାକଟା ଥିବାର ଦେଖିଲି । ତେଣୁ ଜାଣିଜାଣି ମୁଁ ଟେବଲ୍‌ଟା ଗଡ଼େଇଦେଲି । କିଛି ସମୟ ପାଇଁ ସମସ୍ତେ ତଳୁ କମଳା ଆଉ ଭଙ୍ଗା କାଚ ଗୋଟାଇବାରେ ଲାଗିଗଲେ । ସେଇ ଅବସରରେ ମୁଁ ଆଲେକ୍‌ର ପକେଟ୍ ଖୋଜିବା ପାଇଁ ଖସିଗଲି । ମୁଁ ନିଶ୍ଚିତ ଥିଲି ଯେ କାଗଜଖଣ୍ଡ ସେଠି ଥିବ । ମୁଁ ଠିକ୍ ସେ ଖଣ୍ଡକ ପାଇଲାବେଳକୁ କନିଙ୍ଗ୍‌ହାମ୍ ବାପପୁଅ ମୋ ଉପରକୁ ଝାମ୍ପି ପଡ଼ିଲେ । ସେମାନେ ମୋତେ ସେଇଠି ଶେଷକରି ଦେଇଥାନ୍ତେ; କିନ୍ତୁ ଆପଣମାନେ ଖୁବ୍ ଶୀଘ୍ର ମୋତେ ସାହାଯ୍ୟ କରିବାକୁ ପହଞ୍ଚିଗଲେ । ଏବେ ବି ଯୁବକ କନିଙ୍ଗ୍‌ହାମ୍‌ର ହାତର ଚାପ ମୋ ତଣ୍ଟିକୁ ଖୁବ୍ କଷ୍ଟ ଦେଉଛି । ମୋ ହାତରୁ କାଗଜ ଖଣ୍ଡ ଛଡ଼ାଇ ନେବାପାଇଁ ବୁଢ଼ା ମୋ ହାତଟାକୁ ଜୋର୍‌ରେ ମୋଡ଼ି ଧରିଥିଲା । ସେମାନେ ଦେଖିଲେ ଯେ ମୁଁ ସବୁ କଥା ଜାଣିଯିବି । ତେଣୁ ମୋନେ ହଠାତ୍ ଏମିତି ନିରାଶ ଆଉ କ୍ଷିପ୍ତ ହୋଇଉଠିଲେ ।''

''ପରେ ଏ ହତ୍ୟାର ଉଦ୍ଦେଶ୍ୟ ବିଷୟରେ ମୁଁ ବୁଢ଼ା କନିଙ୍ଗ୍‌ହାମ୍ ସାଥିରେ କଥାବାର୍ତ୍ତା କଲି । ସେତେବେଳକୁ ସେ ଅନେକଟା ମୋର ବଶ ହୋଇଗଲେଣି; କିନ୍ତୁ ତାଙ୍କ ପୁଅ ଠିକ୍ ଗୋଟେ ଅସୁରପରି ହେଉଥାଏ । ରିଭଲ୍‌ଭର୍‌ଟା ହାତରେ ପାଇଥିଲେ ସେ ନିଶ୍ଚୟ ନିଜର ବା ଅନ୍ୟ କାହାର ଖପୁରି ଉଡ଼େଇଦେଇଥାନ୍ତା ।

ବୁଢ଼ା କନିଙ୍ଗ୍‌ହାମ୍ ଯେତେବେଳେ ଦେଖିଲେ କେଶ୍‌ଟା ତାଙ୍କ ବିରୁଦ୍ଧରେ ସୁଦୃଢ଼, ସେ ହତାଶ ହୋଇ ସବୁ ସ୍ୱୀକାର କରିଗଲେ । ତାଙ୍କ କଥାରୁ ଜାଣିଲି, ସେମାନେ ଆକ୍‌ଟନ୍‌ଙ୍କ ଘରକୁ ଚୋରି କରିବାକୁ ଗଲାବେଳେ ଏଇ ଉଇଲିୟମ୍ ଲୁଚି ଲୁଚି ତାଙ୍କ ପଛେ ପଛେ ଯାଇଥିଲା । ତେଣୁ ସେମାନେ ତା' କବଳରେ ପଡ଼ିଗଲେ । ସେ ଏମାନଙ୍କୁ ଡରାଇ ପଇସା ଝଡ଼ାଇବାରେ ଲାଗିଲା; କିନ୍ତୁ ଆଲେକ୍ ଅତି ଭୟଙ୍କର ଲୋକ । ତା ସାଥିରେ ଖେଳ ଖେଳିବା ବଡ଼ ବିପଦପୂର୍ଣ୍ଣ । ସେତେବେଳକୁ ଏ ଅଞ୍ଚଳରେ ଡକାୟତିର ଚହଳ ପଡ଼ିଯାଇଥାଏ । ସେଇ ସୁଯୋଗରେ ସେ ଉଇଲିୟମ୍‌କୁ ଖତମ୍ କରିଦେବାକୁ ଗୋଟାଏ ଉପାୟ ଠିକ୍ କଲା । ଉଇଲିୟମ୍ ତାଙ୍କ ଫାନ୍ଦରେ ପଡ଼ିଲା ଏବଂ ପ୍ରାଣ ହରାଇଲା । ସେମାନେ ଯଦି ପୂରା ଚିଠିଟା ନେଇଯାଇପାରିଥାନ୍ତେ, ଆଉ ଅନ୍ୟ କେତେକ ବିଷୟରେ ଟିକିଏ ସାବଧାନ ହୋଇପାରିଥାନ୍ତେ, ତେବେ ତାଙ୍କ ଉପରେ ମୋଟେ ସନ୍ଦେହ ହୋଇ ନଥାନ୍ତା ।''

ମୁଁ ପଚାରିଲି, ''ଆଉ ସେ ଚିଠିଟାର ଅନ୍ୟଖଣ୍ଡକ ?''

ହୋମ୍‌ସ ଆମ ଆଗରେ ଦି'ଖଣ୍ଡଯାକ କାଗଜ ଯୋଡ଼ି ଥୋଇଦେଲେ । ତା'ପରେ ହସି ହସି କହିଲେ, ''ବୁଝିଲ ୱାଟ୍‌ସନ୍, ଆମେ ନିରୋଳାରେ ବିଶ୍ରାମ ନେବାପାଇଁ ଏ ମଫସଲକୁ ଆସିଥିଲେ । ଯାହା ହେଉ ଆମ ଆସିବାଟା ଖୁବ୍ ଫଳପ୍ରଦ ହୋଇଛି । ଏବେ ମୁଁ ସଂପୂର୍ଣ୍ଣ ସୁସ୍ଥ ଆଉ କାଲି ସକାଳେ ଆମେ ନିଶ୍ଚୟ ବେକର୍ ଷ୍ଟ୍ରିଟ୍‌କୁ ଫେରିବା ।''



# ବିକଳାଙ୍ଗ ଲୋକ

ମୋ ବିବାହର ଅଳ୍ପଦିନ ପରେ । ଏକ ଖରାଦିନ ରାତି । ଦିନସାରା କାମ କରି କରି ମୁଁ କ୍ଲାନ୍ତ ହୋଇପଡ଼ିଥାଏ । ତେଣୁ ଖାଇସାରି ସିଗାରେଟ୍ ପାଇପ୍‌ଟା ଲଗାଇ ଖଣ୍ଡେ ଉପନ୍ୟାସ ଧରି ବସିଯାଇଥାଏ । ମୋ ସ୍ତ୍ରୀ ଉପର ମହଲାକୁ ତାଙ୍କ ଶୋଇବା ଘରକୁ ଯାଇସାରିଥାନ୍ତି । ଚାକରବାକରମାନେ ବି କାମ ସାରି ଦରଜା ବନ୍ଦ କରି ଶୋଇବାକୁ ଚାଲିଯାଇଥାନ୍ତି । ମୁଁ ଚଉକିରୁ ଉଠି ସିଗାରେଟ୍ ପାଇପରୁ ପାଉଁଶ ଝାଡୁଛି, ଏତିକିବେଳେ କଲିଂବେଲ୍‌ଟା ବାଜି ଉଠିଲା । କାନ୍ଥଘଣ୍ଟାକୁ ଚାହିଁଲି । ବାରଟା ବାଜିବାକୁ ପନ୍ଦର ମିନିଟ୍ । ଏତେ ଡେରିରେ କେହି ବୁଲିଆସିବା ଅସମ୍ଭବ । ନିଶ୍ଚୟ କେହି ରୋଗୀ ଆସିଛି, ଆଉ ରାତିସାରା ମତେ ବସି ରହିବାକୁ ପଡ଼ିବ । ମୁହଁକୁ ବିକୃତ କରି ହଲ୍ ଘରକୁ ଯାଇ ଦରଜାଟା ଖୋଲିଦେଲି । ଦେଖି ବିସ୍ମିତ ହେଲି ଯେ ସେର୍‌ଲକ୍ ହୋମ୍‌ସ ପାହାଚ ଉପରେ ଠିଆହୋଇଛନ୍ତି ।

ସେ ହସି ହସି କହିଲେ, ''ବୁଝିଲ ଓ୍ୱାଟ୍‌ସନ୍, ଭାବିଥିଲି ଏଠି ପହଞ୍ଚିବାକୁ ବେଶି ଡେରି ହେବନାହିଁ ।''

''ହଉ ବାବୁ, ଦୟାକରି ଭିତରକୁ ଆସ ।''

''ତୁମେ ଖୁବ୍ ଆଶ୍ଚର୍ଯ୍ୟ ହୋଇଯାଉଛ । ହେବାର କଥା । ଆଉ ଆଶ୍ୱସ୍ତ ମଧ୍ୟ ହେଲ । ହୁଁ, ଏବେ ବି ତୁମେ ସେଇ ଆର୍‌କାଡ଼ିଆ ସିଗାର୍ ବ୍ୟବହାର କରୁଛ ! ତୁମ କୋଟ୍ ଉପରେ ପଡ଼ିଥିବା ପାଉଁଶ୍‌ରୁ ସେଟା ବେଶ୍ ଜାଣି ହେଉଛି । ଏବେ ବି ତୁମେ ମିଲିଟାରି ପୋଷାକ ପିନ୍ଧୁଛ ବୋଲି ସହଜରେ କହିହେବ । ହଉ, ଆଜି ରାତି ତୁମ ଘରେ ମୁଁ ରହିବାର ସୁବିଧା ହେବ ?''

''ନିଶ୍ଚୟ । ତୁମେ ଏଠି ରହିଲେ ମୁଁ ଖୁବ୍ ଖୁସିହେବି ।''

''ଧନ୍ୟବାଦ । ମୋ ଖିଆପିଆ ଲାଗି ବ୍ୟସ୍ତ ହୁଅନାହିଁ । ମୁଁ ଓ୍ୱାଟର୍‌ଲୁରେ ଖାଇଦେଇ ଆସିଛି । ତମ ସିଗାର୍‌ରୁ ଗୋଟେ ମୋତେ ଦେଲେ ଖୁସି ହେବି ।''

ମୁଁ ସିଗାର୍ ମୁଣିଟା ବଢ଼ାଇଦେଲି । ସେ ମୋ ସାମନାରେ ବସି କିଛି ସମୟ ଚୁପ୍‌ଚାପ୍ ପାଇପ୍ ଟାଣିଲେ । ମୁଁ ଭଲଭାବରେ ଜାଣିଥିଲି ଯେ ସେମିତି କିଛି

ଗୁରୁତ୍ୱପୂର୍ଣ୍ଣ କାମ ନଥିଲେ ଏତେ ରାତିରେ ସେ ମୋ ପାଖକୁ ଆସି ନଥାନ୍ତେ । ତେଣୁ ତାଙ୍କ ମୁହଁରୁ କଥାଟା ଶୁଣିବାପାଇଁ ମୁଁ ଧୈର୍ଯ୍ୟ ଧରି ବସିରହିଲି । ସେ ମୋ ଆଡ଼େ ନିରେଖି ଚାହିଁ କହିଲେ, ''ଦେଖୁଛି ତୁମେ ଆଜିକାଲି ତୁମ ଡାକ୍ତରୀ ବ୍ୟବସାୟରେ ଖୁବ୍ ବ୍ୟସ୍ତ ଅଛ ।''

''ହଁ, ଆଜି ସାରାଦିନ ମୁଁ କାମରେ ବ୍ୟସ୍ତ । ତୁମେ ମୋତେ ବୋକା ବୋଲି ଭାବିପାର; କିନ୍ତୁ ସତ କହୁଛି ତୁମେ କେମିତି ଏ ସିଦ୍ଧାନ୍ତରେ ପହଞ୍ଚିଲ ମୁଁ କିଛି ବୁଝି ପାରୁନାହିଁ ।''

ଅଳ୍ପ ହସି ହୋମ୍ସ କହିଲେ, ''ମୁଁ ତୁମର ଅଭ୍ୟାସ ଜାଣେ ୱାଟ୍‌ସନ୍ ! ତୁମେ ଯେତେବେଳେ ଡାକ୍ତରୀ କାମରେ ଅଳ୍ପବାଟ ଯାଅ, ସେତେବେଳେ ଚାଲି ଚାଲି ଯାଅ । ଯେତେବେଳେ ବେଶି ଦୂର ଯିବାକୁ ହୁଏ ତୁମେ ଘୋଡ଼ାଗାଡ଼ିରେ ଯାଅ । ମୁଁ ଦେଖୁଛି ତୁମ ଜୋତା ବ୍ୟବହାର କରାଯାଇ ଥିଲେ ବି ମଇଳା ହୋଇନାହିଁ । ତେଣୁ ତୁମେ ଘୋଡ଼ାଗାଡ଼ି ବ୍ୟବହାର କରିଛ, ଆଉ ଆଜିକାଲି ଖୁବ୍ କାର୍ଯ୍ୟବ୍ୟସ୍ତ ଅଛ ବୋଲି ମୋର ମୋଟେ ସନ୍ଦେହ ନାହିଁ ।''

''ବାଃ ଚମତ୍କାର ।''

''ମୋଟେ ନୁହେଁ । ଅତି ସାଧାରଣ କଥା । କେତେଗୁଡ଼ାଏ ଘଟଣାରେ ଅନୁଶୀଳନକାରୀ ଯେଉଁ ଫଳ ବାହାରକରେ, ତାହା ତା ସାଥିକୁ ଖୁବ୍ ଆଶ୍ଚର୍ଯ୍ୟ ଜଣାଯାଏ । କାରଣ ଯେଉଁ ମୂଳ ଛୋଟ ପଏଣ୍ଟ ଉପରେ ଅନୁଶୀଳନ ନିର୍ଭର କରେ; ସେ ସେଥିପ୍ରତି ନଜର ଦେଇ ନଥାଏ । ତୁମର ଏଇ ଛୋଟ ଛୋଟ ଲେଖାଗୁଡ଼ିକ ବିଷୟରେ ମଧ ସେଇ କଥା କୁହାଯାଇପାରେ । ଯେଉଁଠି ସମସ୍ୟାର କେତେଗୁଡ଼ାଏ କଥା ତୁମେ ପାଠକକୁ ନ ଜଣାଇ ନିଜ ହାତରେ ରଖିନିଅ, ସେଠି ତୁମ ଲେଖା ଖୁବ୍ ଚମକପ୍ରଦ ଜଣାଯାଏ । ଏବେ ମୁଁ ଏଇଭଳି ଜଣେ ପାଠକ ଅବସ୍ଥାରେ ପଡ଼ିଛି । ମୋ ହାତରେ ଏବେ ଗୋଟେ କେଶ୍‌ର କେତେଗୁଡ଼ିଏ ସୂତ୍ର ପଡ଼ିଛି । କେଶ୍‌ଟା ଅସାଧାରଣ । ଯେକୌଣସି ଲୋକର ମୁଣ୍ଡ ଗୋଳମାଳିଆ ହୋଇଯିବ । ତେବେ ମୋ ତଥ୍ୟ ପୂରା ହେବାପାଇଁ ଏବେ ବି ଗୋଟେ ଦି'ଟା ବିଷୟ ମୁଁ ପାଇପାରିନାହିଁ; କିନ୍ତୁ ମୁଁ ନିଶ୍ଚୟ ତା ବାହାର କରିବି ୱାଟ୍‌ସନ୍ !'' ହଠାତ୍ ତାଙ୍କ ଆଖି ଝଲସି ଉଠିଲା, ମୁହଁ ଉଜ୍ଜ୍ୱଳ ଦେଖାଗଲା । ସେ ପୁଣି କହିଲେ, ''ସମସ୍ୟାଟାରେ ଗୁଡ଼ାଏ ଚମକପ୍ରଦ ଜିନିଷ ରହିଛି; ବରଂ ଅତି ଅସାଧାରଣ ଭାବେ ଚମକପ୍ରଦ କୁହାଯାଇପାରେ । ମୁଁ

ଘଟଣା ଆଲୋଚନା କରି ପ୍ରାୟ ମୋ ସିଦ୍ଧାନ୍ତର ପାଖାପାଖି ହୋଇଯାଇଛି । କେବଳ ଶେଷ ପର୍ଯ୍ୟାୟରେ ତୁମେ ଯଦି ମୋ ସାଥିରେ ଯାଇପାରନ୍ତ, ତେବେ ମୋତେ ଅନେକ ସାହାଯ୍ୟ କରନ୍ତ ।''

''ସେ ସୁଯୋଗ ପାଇଲେ ତ ମୁଁ ଅତି ଆନନ୍ଦିତ ହେବି ।''

''କାଲି ମୋ ସାଥିରେ ଆଲ୍‌ଡରସଟ୍‌ଯାଏ ଯାଇପାରିବ ।''

''ହଁ, ମୋ ଏଠିକା କାମ ଜାକ୍‌ସନ୍ ଚଳେଇଦେଇପାରିବେ ।''

''ବେଶ୍ । କାଲି ୱାଟର୍‌ଲୁରୁ ଏଗାରଟାବେଳେ ଟ୍ରେନ୍‌ରେ ଯିବାକୁ ମୁଁ ଠିକ୍ କରିଛି ।''

''ତେବେ ତ ମୁଁ ବାହାରିବା ପାଇଁ ଢେର୍ ସମୟ ମିଳିବ ।''

''ଆଚ୍ଛା, ଏବେ ଯଦି ତୁମକୁ ନିଦ ନଲାଗୁଛି, ତେବେ ଯାହା ଘଟିଛି ଆଉ ଯାହା କରିବାକୁ ହେବ, ସେ ବିଷୟରେ ତୁମକୁ ସଂକ୍ଷେପରେ କହିଦେବି ।''

ତୁମେ ଆସିବା ଆଗରୁ ମୋତେ ନିଦ ଲାଗୁଥିଲା; କିନ୍ତୁ ଏବେ ଆଉ ମୋତେ ନିଦ ଲାଗୁନାହିଁ ।''

''କୌଣସି ଗୁରୁତ୍ୱପୂର୍ଣ୍ଣ ଜିନିଷ ବାଦ୍ ନଦେଇ ଘଟଣାଟା ମୁଁ ଯେତେଦୂର ସମ୍ଭବ ସଂକ୍ଷେପରେ କହିବି । ତୁମେ ହୁଏତ ଘଟଣା ବିଷୟରେ କିଛି ଖବରକାଗଜରୁ ପଢ଼ିଥିବ । ଘଟଣାଟା କର୍ଣ୍ଣେଲ୍ ବାର୍‌କଲେଙ୍କ ହତ୍ୟା ବିଷୟ । ସେ ଆଲ୍‌ଡରସଟ୍‌ରେ ଥିବା ରୟାଲ ମାଲୋଜ ସୈନ୍ୟଦଳରେ କର୍ଣ୍ଣେଲ । ମୁଁ ସେଇ ହତ୍ୟା ସମ୍ପର୍କରେ ଅନୁସନ୍ଧାନ କରୁଛି ।''

''ମୁଁ ସେ ବିଷୟରେ କିଛି ଶୁଣିନାହିଁ ।''

''ଘଟଣାଟା ଚାରିଆଡ଼େ ପ୍ରକାଶ ପାଇନାହିଁ । ତା'ଛଡ଼ା ମୋଟେ ଦି'ଦିନ ତଳର ଘଟଣା । ସଂକ୍ଷେପରେ କଥାଟା ହଉଛି ଏଇଆ । ତୁମେ ତ ଜାଣ ଇଂଲଣ୍ଡ ସେନାବାହିନୀରେ ରୟାଲ୍ ମାଲୋଜ୍ ଏକ ଆଇରିସ୍ ସୈନ୍ୟଦଳ । ଏ ଦଳର ଖୁବ୍ ସୁନାମ । କ୍ରିମିଆ ଯୁଦ୍ଧ ସମୟରେ ଆଉ ସିପାହି ବିଦ୍ରୋହ ସମୟରେ ଏ ଦଳ ଅଦ୍ଭୁତ କାମ କରିଛି । ସେଇଦିନୁ ପ୍ରତ୍ୟେକ କ୍ଷେତ୍ରରେ ଏ ଦଳ ଖୁବ୍ ଖ୍ୟାତି ଅର୍ଜ୍ଜନ କରିଛି । ଗଲା ସୋମବାର ରାତି ପର୍ଯ୍ୟନ୍ତ ଜେମ୍‌ସ ବାର୍‌କଲେ ଏ ଦଳର କମାଣ୍ଡର ଥିଲେ । ସେ ଜଣେ ସାହସୀ ଆଉ ଅଭିଜ୍ଞ ସୈନିକ । ସେ ପ୍ରଥମେ

ଜଣେ ସାଧାରଣ ସୈନିକ ଥିଲେ । ସିପାହି ବିଦ୍ରୋହ ସମୟରେ ସାହସିକତା ଯୋଗୁଁ ସେ ପ୍ରମୋସନ୍ ପାଇ ଶେଷରେ ଏ ଦଳର କମାଣ୍ଡର ହେଲେ ।

''କର୍ଣ୍ଣେଲ୍ ବାର୍କଲେ ଯେତେବେଳେ ସର୍ଜେଣ୍ଟ ଥିଲେ, ସେତେବେଳେ ସେ କୁମାରୀ ନାନ୍‌ସୀ ଡେଭୟଙ୍କୁ ବିବାହ କରିଥିଲେ । ନାନ୍‌ସୀ ସେଇ ସେନାଦଳର ଆଉ ଜଣେ ସର୍ଜେଣ୍ଟଙ୍କ ଝିଅ । ତେଣୁ ଏଇ ତରୁଣ ଦମ୍ପତିଙ୍କ ସାମାଜିକ ଜୀବନରେ କିଛି ଅସୁବିଧା ନଥିଲା । ମିଷ୍ଟର ବାର୍କଲେ ତାଙ୍କ ସାଥୀ ଅଫିସରଙ୍କ ମେଳରେ ଯେମିତି ଲୋକପ୍ରିୟ ଥିଲେ, ତାଙ୍କ ସ୍ତ୍ରୀ ନାରୀମହଲରେ ବି ସେମିତି ଖୁବ୍ ପ୍ରିୟ ଥିଲେ । ତା'ଛଡ଼ା ସେ ଖୁବ୍ ସୁନ୍ଦରୀ ଥିଲେ । ଏବେ ବି ତାଙ୍କ ବିବାହର ତିରିଶବର୍ଷ ପରେ ତାଙ୍କ ଚେହେରା ଖୁବ୍ ସୁନ୍ଦର ।''

''କର୍ଣ୍ଣେଲ୍ ବାର୍କଲେଙ୍କ ପାରିବାରିକ ଜୀବନ ସବୁବେଳେ ସୁଖମୟ ଥିଲା ବୋଲି ଜଣାଯାଇଛି । ଏ କେଶ୍‌ରେ ଅଧିକାଂଶ ତଥ୍ୟ ମୁଁ ମେଜର ମର୍‌ଫିଙ୍କଠାରୁ ପାଇଛି । ସେ କହନ୍ତି ଯେ ତାଙ୍କ ସ୍ୱାମୀ ସ୍ତ୍ରୀଙ୍କ ମଧ୍ୟରେ କୌଣସି ପ୍ରକାର ମନୋମାଳିନ୍ୟ ଥିବା ସେ କେବେ ଶୁଣି ନାହାନ୍ତି । ତାଙ୍କର ମୋଟାମୋଟି ଧାରଣା ଯେ ମିସେସ୍ ବାର୍କଲେ ତାଙ୍କ ସ୍ୱାମୀଙ୍କ ପ୍ରତି ଯେତେ ଅନୁରକ୍ତ, ସ୍ୱାମୀ ସ୍ତ୍ରୀଙ୍କ ପ୍ରତି ବରଂ ତାଠୁ ବେଶି ଅନୁରକ୍ତ । ଦିନକ ପାଇଁ ତାଙ୍କ ସ୍ତ୍ରୀ ପାଖରେ ନଥିଲେ ତାଙ୍କୁ ମୋଟେ ଭଲ ଲାଗୁନଥିଲା । ସେନାଦଳର ସମସ୍ତେ ତାଙ୍କୁ ଆଦର୍ଶ ଦମ୍ପତି ବୋଲି ଭାବୁଥିଲେ । ତାଙ୍କ ଭିତରେ ଏମିତି କିଛି ନଥିଲା, ଯାହା ଯୋଗୁଁ ଏ ଦୁର୍ଘଟଣା ଘଟିବ ବୋଲି କେହି କଳ୍ପନା କରିବ ।''

''କର୍ଣ୍ଣେଲ୍ ବାର୍କଲେ ସାଧାରଣ ଅବସ୍ଥାରେ ବେଶ୍ ଖୁସିମିଜାଜ୍‌ର ଲୋକ ଥିଲେ; କିନ୍ତୁ ଆବଶ୍ୟକବେଳେ ସେ ଖୁବ୍ ଉଗ୍ର ଆଉ ହିଂସ୍ର ହୋଇଯାଉଥିଲେ । ତାଙ୍କର ଏ ବ୍ୟବହାର ତାଙ୍କ ସ୍ତ୍ରୀଙ୍କ ପ୍ରତି କିନ୍ତୁ ମୋଟେ ନ ଥିଲା । ଆଉ ଗୋଟେ କଥା ମେଜର ମର୍‌ଫି ଏବଂ ଅନ୍ୟାନ୍ୟ ଅଫିସରମାନେ ଲକ୍ଷ୍ୟ କରିଥିଲେ । ସେଟା ହେଲା ବେଳେବେଳେ କର୍ଣ୍ଣେଲ୍ ବାର୍କଲେ ଖୁବ୍ ହତାଶ ଦେଖାଯାଉଥିଲେ । ମେଜର୍ ମର୍‌ଫିଙ୍କ କହିବା ଅନୁସାରେ କେଉଁ ଏକ ଅଜଣା ହାତ ଯେମିତି ତାଙ୍କ ମୁହଁରୁ ହସ ପୋଛି ଦେଉଥିଲା । ଯେତେବେଳେ ତାଙ୍କର ଏ ଅବସ୍ଥା ଆସୁଥିଲା, ସେ ଦିନ ଦିନ ଧରି ବିଷାଦରେ ବୁଡ଼ି ରହୁଥିଲେ । ଏଇ ଅବସ୍ଥା ଆଉ କେତେଟା କୁସଂସ୍କାର ତାଙ୍କ ଚରିତ୍ରର ବିଶେଷତ୍ୱ ବୋଲି ତାଙ୍କ ସାଥୀ ଅଫିସରମାନେ ଲକ୍ଷ୍ୟ କରିଥିଲେ । ଏଇ କୁସଂସ୍କାର ଯୋଗୁଁ ସେ ସନ୍ଧ୍ୟାପରେ ଏକୁଟିଆ ରହିବାକୁ ଭଲପାଉ ନଥିଲେ ।''

''କେତେ ବର୍ଷ ହେଲା ରୟାଲ୍ ମାଲୋଚ୍‌ର ପ୍ରଥମ ବାଟାଲିଆନ୍ ଏଇ ଆଲଡରସଟ୍‌ରେ ଅବସ୍ଥାପିତ ହୋଇଛି । ବିବାହିତା ଅଫିସରମାନେ ବାରାକ୍‌ରେ ନରହି ବାହାରେ ରହନ୍ତି । କର୍ଣ୍ଣେଲ୍ ବାର୍‌କଲେ ଉତ୍ତର କ୍ୟାମ୍ପଠୁ ପ୍ରାୟ ଅଧ ମାଇଲିଏ ଦୂରରେ ଗୋଟେ ଘରେ ରହୁଥିଲେ । ଘରଟାର ନାଁ ଲାଚାଇନ୍ । ଘର ଚାରିପାଖେ ପଡ଼ିଆ ଆଉ ବଗିଚା । ପଶ୍ଚିମ ପାଖରେ ସାଧାରଣ ରାସ୍ତାଟା ଘର ପାଖରୁ ତିରିଶ ଗଜରୁ ବେଶି ଦୂର ନୁହେଁ । କର୍ଣ୍ଣେଲ୍‌ଙ୍କ ଚାକରବାକରଙ୍କ ଭିତରେ ଜଣେ ଘୋଡ଼ା ସଇସ, ଆଉ ଦି'ଜଣ ଚାକରାଣୀ । ମାଲିକ ମାଲିକାଣୀଙ୍କ ସାଥିରେ ଏଇତକ ହେଲେ ଲାଚାଇନ୍‌ର ଅଧିବାସୀ । ବାର୍‌କଲେଙ୍କର କୌଣସି ପିଲାଛୁଆ ନଥିଲେ । ବନ୍ଧୁବାନ୍ଧବ ବି ତାଙ୍କ ଘରକୁ ପ୍ରାୟ କେହି ଆସନ୍ତି ନାହିଁ ।''

''ଏଥର ଗଲା ସୋମବାର ସନ୍ଧ୍ୟାରେ ଲାଚାଇନ୍‌ରେ ଯାହା ଘଟିଲା କହୁଛି । ମିସେସ୍ ବାର୍‌କଲେ ରୋମାନ୍ କାଥଲିକ୍ ଚର୍ଚ୍ଚରେ ଜଣେ ସଭ୍ୟ ଥିଲେ । ସେ ସେଣ୍ଟଜର୍ଜ ସେବାସଂସ୍ଥା ଗଢ଼ିବାରେ ଆଗ୍ରହୀ ଥିଲେ । ଗରିବ ଲୋକଙ୍କୁ ପୁରୁଣା ପୋଷାକ ଦେବା ଏ ସଂସ୍ଥାର ଉଦ୍ଦେଶ୍ୟ । ସେଦିନ ରାତି ଆଠଟାରେ ଏ ସଂସ୍ଥାର ଗୋଟେ ସଭା ହେବାର ଥିଲା । ମିସେସ୍ ବାର୍‌କଲେ ସଭାକୁ ଯିବାପାଇଁ ଖୁବ୍ ତରତରରେ କିଛି ଖାଇନେଲେ । ଘରୁ ଗଲାବେଳେ ସେ ତାଙ୍କ ସ୍ୱାମୀଙ୍କ ସଙ୍ଗେ ସାଧାରଣ ଦି'ପଦ କଥାବାର୍ତ୍ତା କଲେ, ଆଉ ଖୁବ୍ ଶୀଘ୍ର ଫେରିଆସିବେ ବୋଲି କହିଲେ । ଏ କଥା ତାଙ୍କ ଘୋଡ଼ାସଇସ ଶୁଣିଛି । ତା'ପରେ ସେପାଖ ଘରେ ରହୁଥିବା କୁମାରୀ ମରିସନ୍‌ଙ୍କୁ ଡାକିଲେ । ଦି'ଜଣଯାକ ସାଥିହୋଇ ସଭାକୁ ଗଲେ । ସଭାକାମ ଚାଳିଶ ମିନିଟ୍‌ରେ ସରିଗଲା । ନଅଟା ପନ୍ଦର ମିନିଟ୍‌ବେଳେ ମିସେସ୍ ବାର୍‌କଲେ କୁମାରୀ ମରିସନ୍‌ଙ୍କୁ ତାଙ୍କ ଘରେ ଛାଡ଼ିଦେଇ ନିଜ ଘରକୁ ଫେରିଲେ ।''

''ଲାଚାଇନ୍‌ରେ ବଖରାଏ ଘର ସକାଳେ ବସାଉଠା କରିବା ପାଇଁ ବ୍ୟବହୃତ ହୁଏ । ଏଇ ବଖରାର ମୁହଁ ରାସ୍ତା ଆଡ଼କୁ । ପଡ଼ିଆ କଡ଼କୁ ଗୋଟେ ବଡ଼ କାଚର ଦରଜା । ପଡ଼ିଆଟା ପ୍ରାୟ ତିରିଶ ଗଜ ଚଉଡ଼ା । ପଡ଼ିଆ ଶେଷରେ ରାସ୍ତା କଡ଼ରେ ଗୋଟେ ଅଳ୍ପ ଉଚ କାନ୍ଥ । କାନ୍ଥ ଉପରେ ଲୁହାଛଡ଼ ଦିଆଯାଇଛି । ଫେରିବା ପରେ ମିସେସ୍ ବାର୍‌କଲେ ଏଇ ବଖରାକୁ ଗଲେ । ଘରଟା ସନ୍ଧ୍ୟାପରେ ପ୍ରାୟ ବ୍ୟବହାର କରାଯାଏ ନାହିଁ । ତେଣୁ ଘରର ପରଦାଗୁଡ଼ା

ଟଣାଯାଇ ନଥିଲା । ମିସେସ୍ ବାର୍‌କଲେ ଲ୍ୟାମ୍ପଟା ଲଗାଇ କଲିଂବେଲ୍ ବଜାଇଲେ । ଚାକରାଣୀ ଜେନ୍ ଷ୍ଟୁଆର୍ଟ ଆସିବାରୁ ତାକୁ ଚା' କପେ ଆଣିବାକୁ କହିଲେ । ସାଧାରଣତଃ ଏତେବେଳେ ଚା' ଖାଇବା ତାଙ୍କର ମୋଟେ ଅଭ୍ୟାସ ନୁହେଁ । ସେତେବେଳକୁ କର୍ଣ୍ଣେଲ୍ ଖାଇବା ଘରେ ବସିଥିଲେ । ତାଙ୍କ ସ୍ତ୍ରୀ ଫେରିବା କଥା ଶୁଣି ସେ ତାଙ୍କ ପାଖକୁ ଆସିଲେ । ସେ ଆସିବାବେଳେ ଘୋଡ଼ାସଇସ ତାଙ୍କୁ ଦେଖିଛି । ତା'ପରେ ତାଙ୍କୁ ଆଉ ଜୀବିତ ଦେଖାଯାଇନାହିଁ ।''

''ଦଶମିନିଟ୍ ପରେ ଚାକରାଣୀ ଚା'ଧରି ଆସିଲା ; କିନ୍ତୁ ଦରଜା ପାଖରେ ପହଞ୍ଚି ଶୁଣିଲା ତା ମାଲିକ ଆଉ ମାଲିକାଣୀ ଖୁବ୍ ରାଗିଯାଇ ପାଟିତୁଣ୍ଡ କରୁଛନ୍ତି । ସେ ଆଶ୍ଚର୍ଯ୍ୟ ହୋଇଗଲା । ତା'ପରେ କବାଟରେ ଠକ୍ ଠକ୍ କଲା ; କିନ୍ତୁ ଭିତରୁ କିଛି ଉତ୍ତର ପାଇଲା ନାହିଁ । କବାଟ ଫିଟାଇବା ପାଇଁ ସେ ହ୍ୟାଣ୍ଡଲ୍‌ଟା ମୋଡ଼ିଲା ; ମାତ୍ର ଦେଖିଲା ଯେ କବାଟ ଭିତର ପାଖରୁ ଚାବିପଡ଼ିଛି । ସେ ଦୌଡ଼ିଯାଇ ରାନ୍ଧୁଣୀକୁ ଏକଥା କହିଲା । ସ୍ତ୍ରୀ ଲୋକ ଦି'ଜଣ ଘୋଡ଼ାସଇସକୁ ସାଥିରେ ଧରି ଆସିଲେ । କଳିକଜିଆ ସେତେବେଳଯାଏ ବି ଚାଲିଥାଏ । ସେମାନେ ବାହାରେ ରହି ଶୁଣୁଥାନ୍ତି । ସେମାନେ ସମସ୍ତେ କହନ୍ତି ଯେ ଭିତରୁ କେବଳ ମିଷ୍ଟର ଏବଂ ମିସେସ୍ ବାର୍‌କଲେ, ଏଇ ଦି'ଜଣଙ୍କ ସ୍ୱର ଶୁଭୁଥାଏ । ମିଷ୍ଟର୍ ବାର୍‌କଲେ ଖୁବ୍ ଧୀରେ କମ୍ କଥା କହୁଥାନ୍ତି ; କିନ୍ତୁ ମିସେସ୍ ବାର୍‌କଲେଙ୍କ ସ୍ୱର ଖୁବ୍ କଡ଼ା ଶୁଭୁଥାଏ । ଯେତେବେଳେ ସେ ଖୁବ୍ ଜୋର୍‌ରେ କଥା କହୁଥାନ୍ତି, ସେତେବେଳେ 'କାପୁରୁଷ' ଶବ୍ଦଟା ଶୁଣାଯାଉଥାଏ । ଏଇ ଶବ୍ଦଟା ସେ ବାରମ୍ବାର କହୁଥାନ୍ତି । ତା'ଛଡ଼ା ''ଏବେ କ'ଣ କରାଯିବ ? ମୋତେ ବଞ୍ଚିବାକୁ ଦିଅ, ମୋର ତମଠି କିଛି ପ୍ରୟୋଜନ ନାହିଁ !'' ଆଦି କଥା ତାଙ୍କ ମୁହଁରୁ ଶୁଣାଯାଉଥାଏ । ଶେଷରେ ମିଷ୍ଟର ବାର୍‌କଲେ ଭୟରେ ଚିତ୍କାର କରିଉଠିଲେ, ଆଉ ମିସେସ୍ ବାର୍‌କଲେଙ୍କ କଣ୍ଠରୁ ଏକ କାନଫଟା ଚିତ୍କାର ଶୁଭିଲା । କିଛି ଗୋଟେ ଦୁର୍ଘଟଣା ଘଟିଛି ବୋଲି ଜାଣି ଘୋଡ଼ାସଇସ ଦରଜା ପାଖକୁ ଧାଇଁଯାଇ କବାଟଟା ଜୋରକରି ଖୋଲିବାକୁ ଚେଷ୍ଟା କଲା । ଭିତରୁ ସେମିତି ଚିତ୍କାର ଶୁଭୁଥାଏ । ସେ କିନ୍ତୁ କବାଟଟା ଖୋଲିପାରିଲା ନାହିଁ । ଚାକରାଣୀ ଦି'ଜଣ ଭୟରେ ଥରୁଥାନ୍ତି । ତେଣୁ ସେମାନେ ତାକୁ କିଛି ସାହାଯ୍ୟ କରିବା ଅସମ୍ଭବ । ହଠାତ୍ ତାକୁ ଗୋଟେ ବୁଦ୍ଧି ଦେଖାଗଲା । ସେ ହଲ୍‌ଘର ଭିତରଦେଇ ପଡ଼ିଆକୁ ଦୌଡ଼ିଗଲା । ସେ ପାଖରେ ଥିବା ବଡ଼ ଝରକା

ଖୋଲାଥିଲା । ସେଇ ବାଟେ ସେ ଘର ଭିତରକୁ ପଶିଗଲା । ସେତେବେଳକୁ ତା ମାଲିକାଣୀଙ୍କ ଚିତ୍କାର ବନ୍ଦ ହୋଇଗଲାଣି । ସେ ଖଟଟା ଉପରେ ଅଚେତ ହୋଇପଡ଼ିଥାନ୍ତି । ବିଚରା କର୍ଣ୍ଣେଲ୍ ଗୋଟେ କଣରେ ପଡ଼ିଥାନ୍ତି । ତାଙ୍କ ଗୋଡ଼ ଦି'ଟା ଗୋଟେ ଚଉକି ଉପରେ ଆଉ ମୁଣ୍ଡଟା ମେଢିଆ ଉପରେ ରହିଥାଏ । ମୁଣ୍ଡ ଚାରିପାଖେ ମେଞ୍ଚାଏ ରକ୍ତ । ତା'ରି ଭିତରେ ତାଙ୍କ ମୃତଦେହଟା ପଥର ପରି ପଡ଼ିଥାଏ ।''

''ସେ ଦେଖିଲା ତା ମାଲିକଙ୍କ ପାଇଁ ତାର ଆଉ କିଛି କରିବାର ନାହିଁ । ତେଣୁ ପ୍ରଥମେ ଦରଜାଟା ଖୋଲିବା ପାଇଁ ତାର ଭାବନା ହେଲା; କିନ୍ତୁ ଚାବିଟା ଭିତର ପାଖ ତାଲାରେ ଲାଗିନଥିଲା । ଘରସାରା ଖୋଜି ଖୋଜି ବି ସେ ଚାବିଟା ପାଇଲା ନାହିଁ । ତେଣୁ ସେ ଝରକାବାଟେ ପୁଣି ବାହାରକୁ ବାହାରି ଆସିଲା । ଜଣେ ପୋଲିସ୍ ଏବଂ ଜଣେ ଡାକ୍ତରଙ୍କୁ ସାଥିରେ ଧରି ଫେରିଲା । ଏ ଘଟଣାରେ ମିସେସ୍ ବାର୍‌କଲେଙ୍କ ଉପରେ ସନ୍ଦେହ ହେବା ସ୍ୱାଭାବିକ । ସେତେବେଳଯାଏ ସେ ସେମିତି ଅଚେତ ହୋଇପଡ଼ିଥାନ୍ତି । ତାଙ୍କୁ ତାଙ୍କ କୋଠରିକୁ ଉଠାଇ ନିଆଗଲା । କର୍ଣ୍ଣେଲଙ୍କ ଶରୀରକୁ ଗୋଟେ ସୋଫା ଉପରେ ରଖିଦିଆଗଲା । ତାପରେ ଦୁର୍ଘଟଣା ସ୍ଥାନଟିକୁ ଭଲଭାବେ ପରୀକ୍ଷା କରାଗଲା ।

''ହତଭାଗା କର୍ଣ୍ଣେଲଙ୍କ ମୁଣ୍ଡର ପଛ ପାଖରେ ଦି' ଇଞ୍ଚ ଲମ୍ବାର ଗୋଟେ କ୍ଷତ ହୋଇଥିଲା । କୌଣସି ଗୋଟେ ଥୁଣ୍ଟା ଅସ୍ତ୍ର ଆଘାତରେ ଏ କ୍ଷତ ହୋଇଥିବା ସ୍ୱାଭାବିକ । ସେ ଅସ୍ତ୍ରଟା କ'ଣ ଜାଣିବାରେ କିଛି ଅସୁବିଧା ହେଲା ନାହିଁ । ମେଢିଆ ଉପରେ ମୃତଶରୀର ପାଖରେ ଗୋଟେ ଟାଣ କାଠର ମୁଦ୍‌ଗର ପଡ଼ିଥିଲା । ତାର ହ୍ୟାଣ୍ଡଲ୍‌ଟା ହାତରେ ଧରିବା ଅଂଶ ହାଡ଼ରେ ତିଆରି । ବିଭିନ୍ନ ଦେଶରୁ ସଂଗ୍ରହ କରିଥିବା ଏଭଳି ଅନେକ ଅସ୍ତ୍ରଶସ୍ତ୍ର କର୍ଣ୍ଣେଲଙ୍କ ପାଖରେ ଥିଲା । ପୋଲିସ୍ ଭାବିଲା ଯେ ଏ ଅସ୍ତ୍ରଟା ତା'ରି ଭିତରୁ ଗୋଟେ । ଚାକର-ଚାକରାଣୀମାନେ ଏଟା ଆଗରୁ କେବେ ଦେଖିନାହାନ୍ତି ବୋଲି କହନ୍ତି, କିନ୍ତୁ ଘରେ ଥିବା ବହୁ ଜିନିଷ ଭିତରେ ଏଇଟା ତାଙ୍କ ଆଖିରେ ନ ପଡ଼ିବାଟା ବିଚିତ୍ର ନୁହେଁ । ପୋଲିସ୍ ଘରଭିତରୁ ସେମିତି ଆଉ କିଛି ଗୁରୁତ୍ୱପୂର୍ଣ୍ଣ ଜିନିଷ ପାଇଲା ନାହିଁ; କିନ୍ତୁ ହଜିଥିବା ଚାବିଟା ମୃତବ୍ୟକ୍ତି ନିକଟରୁ କିମ୍ବା ମିସେସ୍ ବାର୍‌କଲେଙ୍କ ନିକଟରୁ କିମ୍ବା ଘରର କୌଣସି ଜାଗାରୁ ମିଳିଲା ନାହିଁ । ଶେଷରେ ଜଣେ କମାରକୁ ଡାକି ଦରଜାଟା ଖୋଲାଗଲା ।

''ମଙ୍ଗଳବାର ସକାଳ ସୁଦ୍ଧା ଏଇ ହେଲା ଘଟଣା । ମେଜର ମର୍‌ଫିଙ୍କ ଅନୁରୋଧରେ ମୁଁ ପୋଲିସ୍‌କୁ ସାହାଯ୍ୟ କରିବାକୁ ଆଲ୍‌ଡର୍‌ସଟ୍ ଯାଇଥିଲି । କଥାଟା ଶୁଣିଲାପରେ ତୁମେ ନିଶ୍ଚୟ ସ୍ୱୀକାର କରିବ ଯେ ଘଟଣାଟା କୌତୂହଳପୂର୍ଣ୍ଣ; କିନ୍ତୁ ସତ କହୁଛି, ସେଠିକି ଯାଇ ମୁଁ ସବୁକଥା ଲକ୍ଷ୍ୟ କଲାପରେ ଦେଖିଲି, ଘଟଣାଟା କଳ୍ପନାତୀତ ଭାବେ କୌତୂହଳପୂର୍ଣ୍ଣ । ଘରଟା ପରୀକ୍ଷା କରିବା ଆଗରୁ ମୁଁ ଚାକର-ଚାକରାଣୀଙ୍କୁ କେତେକ ପ୍ରଶ୍ନ ପଚାରିଲି, କିନ୍ତୁ ମୁଁ ଯାହା କହିଛି ସେତିକି ମାତ୍ର ତାଙ୍କଠୁ ଜାଣିବାକୁ ପାଇଲି । ଆଉ ଗୋଟେ ଗୁରୁତ୍ୱପୂର୍ଣ୍ଣ ତଥ୍ୟ ଚାକରାଣୀ ଜେନ୍ ଷ୍ଟୁଆର୍ଟ ଠାରୁ ମିଳିଲା । ତୁମର ମନେଥିବ ସେ ଚା'ଧରି ଆସି କଳିକଜିଆ ଶବ୍ଦ ଶୁଣିଲା । ତା'ପରେ ଯାଇ ଅନ୍ୟମାନଙ୍କୁ ଡାକିଆଣିଲା । ସେ କହେ ଯେ ପ୍ରଥମ ଥର ସେ ଯେତେବେଳେ ଏକା ଥିଲା, ତା ମାଲିକ-ମାଲିକିଆଣୀଙ୍କ କଥା ଖୁବ୍ ଧୀର ଥିଲା; ତେଣୁ ସେ ପ୍ରାୟ କିଛି ଶୁଣିପାରିଲା ନାହିଁ । କେବଳ ସେମାନଙ୍କ ସ୍ୱରରୁ ସେ ଜାଣିପାରିଲା ଯେ ସେମାନେ କଳି ଲାଗିଛନ୍ତି । ତାକୁ ବାରମ୍ବାର ପଚାରିବାରୁ ସେ ମନେପକାଇ କହିଲା ଯେ ତା' ମାଲିକାଣୀ ଦି'ଥର ଡେଭିଡ୍' ଶବ୍ଦ କହିବାର ସେ ଶୁଣିଛି । ହଠାତ୍ କାହିଁକି କଳିହେଲା ସେ କଥା ଜାଣିବା ପାଇଁ ଏ ପଏଣ୍ଟଟା ଅତି ଗୁରୁତ୍ୱପୂର୍ଣ୍ଣ । କାରଣ ତୁମେ ଜାଣ କର୍ଣ୍ଣେଲଙ୍କ ନାଁ ଜେମ୍‌ସ ।

''ଆଉ ଗୋଟେ ବିଷୟ ଚାକରବାକର ଏବଂ ପୋଲିସ୍‌ଙ୍କ ମନରେ ଗଭୀର ରେଖାପାତ କରିଥିଲା । ତା ହେଲା କର୍ଣ୍ଣେଲଙ୍କ ଭୟଭୀତ ବିକୃତ ମୁହଁ । ସେମାନଙ୍କ କହିବା ଅନୁସାରେ ଭୟର ଏମିତି ଲକ୍ଷଣ ମଣିଷ ମୁହଁରେ ଆଉ କେଉଁଠି ଦେଖାଯାଇଥିବ କି ନାହିଁ । ସେ ମୁହଁକୁ ଦେଖୁ ଦେଖୁ କେତେଜଣ ଲୋକ ଅଚେତ ହୋଇଗଲେ । ଏଟା ନିଶ୍ଚିତ ଯେ ମରିବା ଆଗରୁ ସେ ତାଙ୍କ ଭାଗ୍ୟକୁ ଦେଖିପାରିଥିଲେ, ଆଉ ସେଇଥିପାଇଁ ଏମିତି ଭୟଭୀତ ହୋଇଯାଇଥିଲେ । ପୋଲିସ୍‌ର ସିଦ୍ଧାନ୍ତ ହେଲା ଯେ କର୍ଣ୍ଣେଲ ଦେଖିଲେ ତାଙ୍କ ସ୍ତ୍ରୀ ତାଙ୍କୁ ହତ୍ୟା କରିବାକୁ ଆସୁଛନ୍ତି । ଏହା ମଧ୍ୟ ଘଟଣା ସାଥିରେ ଖାପ୍ ଖାଇଯାଉଛି । ତାଙ୍କ ମୁଣ୍ଡର ପଛ ପାଖ ଆଘାତ ମଧ୍ୟ ଏହାକୁ ଅପ୍ରମାଣ କରିପାରିବ ନାହିଁ । କାରଣ ତାଙ୍କ ସ୍ତ୍ରୀ ତାଙ୍କୁ ଆଘାତ କଲାବେଳେ ତାଙ୍କୁ ଏଡ଼ାଇବା ପାଇଁ ସେ ହୁଏତ ବୁଲିପଡ଼ିଥିବେ । ମିସେସ୍ ବାର୍‌କଲେଙ୍କ ମାନସିକ ଅସୁସ୍ଥତା ଯୋଗୁଁ ତାଙ୍କଠୁଁ କିଛି ଖବର ମିଳିପାରିଲା ନାହିଁ । ପୋଲିସ୍ ସୂତ୍ରରୁ ଆଉ ଗୋଟେ ଖବର ପାଇଲି । କୁମାରୀ ମରିସ୍‌ନ କହିଛନ୍ତି ଯେ ସଭାରୁ

ଫେରିଲାବେଳକୁ ମିସେସ୍ ବାର୍‌କଲେ ବିଚଳିତ ଜଣାପଡୁଥିଲେ କିନ୍ତୁ ତାର କାରଣ ସେ ଜାଣନ୍ତି ନାହିଁ ।

''ଏସବୁ ତଥ୍ୟ ପାଇଲା ପରେ ତା'ଭିତରୁ ଗୁରୁତ୍ୱପୂର୍ଣ୍ଣ ତଥ୍ୟଗୁଡ଼ାକୁ ସାଧାରଣ ତଥ୍ୟଠୁ ଅଲଗା କରିବା ପାଇଁ ମୁଁ ବସିଗଲି । ତା' ଭିତରେ କେତେଟା ସିଗାରେଟ୍ ପାଇପ୍ ଶେଷ ହୋଇଗଲା । ଏ କେଶ୍‌ରେ ଚାବିଟା କୁଆଡ଼େ ଉଭେଇଯିବାଟା ଯେ ସବୁଠୁ ଗୁରୁତ୍ୱପୂର୍ଣ୍ଣ, ଏଥିରେ ସନ୍ଦେହ ନାହିଁ । ଚାବିଟା ଖୋଜି ବାହାରକରିବା ପାଇଁ ସବୁ ପ୍ରକାର ଯତ୍ନ କରାଯାଇଛି କିନ୍ତୁ ଘରଭିତରୁ ଚାବିଟା ମିଳିଲା ନାହିଁ । ତେଣୁ ସେଟା ଘରଭିତରୁ ଅନ୍ୟଆଡ଼େ ନିଆଯାଇଛି । କିନ୍ତୁ କର୍ଣ୍ଣେଲ କିମ୍ବା ତାଙ୍କ ସ୍ତ୍ରୀଙ୍କ ପାଖରେ ଚାବି ନଥିଲା, ଏଟା ସୁନିଶ୍ଚିତ କଥା । ତେଣୁ ଅନ୍ୟ ଜଣେ ତୃତୀୟ ବ୍ୟକ୍ତି ନିଶ୍ଚୟ ସେ ଘରଭିତରକୁ ଯାଇଛି, ଆଉ ସେ କେବଳ ସେଇ ଝରକା ବାଟଦେଇ ଭିତରକୁ ଯାଇଥିବ । ମୁଁ ଭାବିଲି ଘରଟା ଏବଂ ପାଖ ପଡ଼ିଆଟା ଭଲଭାବରେ ପରୀକ୍ଷା କରି ଦେଖିଲେ ଏଇ ରହସ୍ୟମୟ ଲୋକର କିଛି ସଙ୍କେତ ମିଳିପାରେ । ତୁମେ ତ ମୋ କାର୍ଯ୍ୟପଦ୍ଧତି ଜାଣ ୱାଟ୍‌ସନ୍ ! ମୁଁ ଅନୁସନ୍ଧାନରେ କୌଣସି ପଦ୍ଧତିଟାକୁ ବାଦ୍ ଦେଇନାହିଁ । ଶେଷରେ ମୁଁ ସଙ୍କେତ ପାଇଲି, କିନ୍ତୁ ଯାହା ଆଶା କରୁଥିଲି ତା'ଠୁ ସଂପୂର୍ଣ୍ଣ ଅଲଗା । ଘର ଭିତରେ ଜଣେ ପୁରୁଷ ପଶିଥିଲା । ସେ ରାସ୍ତାରୁ ଆସି ପଡ଼ିଆ ପାରହୋଇ ଘରେ ପଶିଛି । ମୁଁ ତାର ପାଞ୍ଚଟା ପରିଷ୍କାର ପାଦଚିହ୍ନ ପାଇପାରିଲି । ସେଥିରୁ ଗୋଟେ ରାସ୍ତା ଉପରେ ଯେଉଁଠି ସେ ପାଚେରି ଉପରେ ଉଠିଛି, ଦୁଇଟା ପାଦଚିହ୍ନ ପଡ଼ିଆରେ, ଆଉ ଦି'ଟା ଝାପ୍‌ସା ପାଦଚିହ୍ନ ଝରକାର ଚୁଡ଼ିକାଠରେ । ପଡ଼ିଆ ଭିତରେ ଆସିଲାବେଳେ ସେ ଦୌଡ଼ିକରି ଆସିଛି । କାରଣ ତା' ଗୋଇଠି ଚହ୍ନଠାରୁ ପଞ୍ଝାର ଚିହ୍ନ ଅଧିକ ସ୍ପଷ୍ଟ, କିନ୍ତୁ ସେ ଲୋକ ଯୋଗୁଁ ମୁଁ ବିସ୍ମିତ ନୁହେଁ ୱାଟ୍‌ସନ୍, ବିସ୍ମିତ ତା ସାଥିଯୋଗୁଁ ।''

''ତା ସାଥୀ !'' ମୁଁ ଚିତ୍କାର କରିଉଠିଲି ।

ହୋମ୍ ପକେଟରୁ ଖଣ୍ଡେ ଜରିକାଗଜ ବାହାର କରି ଆଣ୍ଠୁ ଉପରେ ମେଲାଇଧରି ପଚାରିଲେ, ''ଏଥିରୁ କ'ଣ ବୁଝୁଛ ?'' ଦେଖିଲି କାଗଜଟାରେ କୌଣସି ଛୋଟ ଜୀବର କେତେଗୁଡ଼ାଏ ପାଦଚିହ୍ନ ଉଠାଯାଇଛି । ସେଥିରେ ପାଞ୍ଚଟା ଆଙ୍ଗୁଠିର ଚିହ୍ନ ଥିଲା । ତା'ଛଡ଼ା ବଡ଼ ବଡ଼ ନଖ ଥିବା ପରି ଜଣାଗଲା । ଚିହ୍ନଟା ଗୋଟେ ଚାମଚଠୁ ବଡ଼ ହେବ ନାହିଁ ।

କହିଲି, ''ଏଇଟା ଗୋଟେ କୁକୁର !''

''କୁକୁର କେବେ ଗୋଟେ ପରଦା ଉପରକୁ ଉଠିବା ତୁମେ ଶୁଣିଛ ? ମୁଁ ପରଦା ଉପରେ ଏ ଜୀବଟାର ପାଦଚିହ୍ନ ପରିଷ୍କାର ଦେଖିଛି ।''

''ତେବେ କ'ଣ ଏଟା ମାଙ୍କଡ଼ ?''

''କିନ୍ତୁ ଏଟା ତ ମାଙ୍କଡ଼ର ପାଦଚିହ୍ନ ନୁହେଁ ।''

''ତେବେ ଏଟା କ'ଣ ହୋଇପାରେ ?''

''ଏଟା କୁକୁର ନୁହେଁ କି ବିଲେଇ ନୁହେଁ କି ମାଙ୍କଡ଼ ନୁହେଁ କିମ୍ବା ଆମେ ଭଲରକମ ଚିହ୍ନିଥିବା କୌଣସି ଜୀବ ନୁହେଁ । ମୁଁ ତା ପାଦଚିହ୍ନର ବିଭିନ୍ନ ମାପ ଆଣିଛି । ଏଇ ଚାରିଟା ପାଦଚିହ୍ନ ଦେଖ । ଏଠି ଜୀବଟା ନିଶ୍ଚଳ ହୋଇ ଠିଆ ହୋଇଥିଲା । ତୁମେ ଦେଖ, ତା ଆଗ ଗୋଡ଼ରୁ ପଛ ଗୋଡ଼ର ଦୂରତା ପନ୍ଦର ଇଞ୍ଚରୁ କମ୍ ନୁହେଁ । ତା ସାଥିରେ ବେକ ଆଉ ମୁଣ୍ଡର ଦୈର୍ଘ୍ୟ ମିଶାଅ । ତା'ହେଲେ ଜୀବଟା ଦୁଇ ଫୁଟରୁ କମ୍ ଲମ୍ବ ହେବ ନାହିଁ । ତା'ଛଡ଼ା ଯଦି ତାର ଲାଞ୍ଜ ଥାଏ, ତେବେ ଆହୁରି ବେଶି ଲମ୍ବ ହେବ । ଏଥର ଏ ମାପଗୁଡ଼ାକ ଦେଖ । ଏଠି ଜୀବଟା ଚାଲୁଥିଲା; ଆମେ ତା' ପାଦର ପହଣ୍ଡ ଏଥିରୁ ଜାଣିପାରିବା । ପ୍ରତ୍ୟେକ ଜାଗାରେ ତା' ପହଣ୍ଡ ମୋଟେ ତିନି ଇଞ୍ଚ । ଏଥିରୁ ଆମେ ଜାଣିପାରୁଛେ, ସେ ଜୀବଟାର ଦେହ ଖୁବ୍ ଲମ୍ବ ଅଥଚ ଗୋଡ଼ଗୁଡ଼ା ଖୁବ୍ ଛୋଟ । ଜୀବଟା ଭୂଇଁ ଉପରେ କେଉଁଠି ହେଲେ ଶୋଇପଡ଼ି ନାହିଁ । ତେଣୁ ତା' ଦେହର ଚିହ୍ନ ନାହିଁ; କିନ୍ତୁ ମୁଁ ଯାହା କହିଛି ତାର ଆକାର ସେଇଆ ହେବ । ତାଛଡ଼ା ସେ ପରଦା ଉପରକୁ ଉଠିପାରେ ଏବଂ ସେ ମାଂସାଶୀ ।''

''ସେ କଥା ତୁମେ ଜାଣିଲ କେମିତି ?''

''କାରଣ ସେ ପରଦା ଉପରକୁ ଉଠିଥିଲା । ଝରକାରେ ଗୋଟେ ହଳଦୀବସନ୍ତ ଚଢ଼େଇର ପଞ୍ଜୁରି ଝୁଲୁଥିଲା । ସେଇ ପକ୍ଷୀ ଏ ଜୀବର ଲକ୍ଷ୍ୟ ଥିଲା ବୋଧହୁଏ ।''

''ତେବେ ସେଟା କି ଜୀବ ?''

''ସେଇତକ ଯଦି ମୁଁ ଜାଣିପାରନ୍ତି, ତେବେ ଏ ସମସ୍ୟା ସମାଧାନ ଦିଗରେ ଅନେକ ଆଗେଇଯାଇପାରନ୍ତି । ମୋଟ ଉପରେ ସେଇଟା ଉଇଜେଲ ବା ଷ୍ଟୋଟ୍ ଜାତୀୟ ଏକ ଜୀବ; କିନ୍ତୁ ମୁଁ ଯେତେ ଉଇଜେଲ୍ ବା ଷ୍ଟୋଟ୍ ଦେଖିଛି, ତା'ଠାରୁ ଏ ଜୀବଟା ଢେର୍ ବଡ଼ ।''

''କିନ୍ତୁ ଏ ଅପରାଧ ସାଥିରେ ସେ ଜୀବଟାର ସମ୍ପର୍କ କ'ଣ ?''

''ତା'ବି ଏଯାଏ ଜଣାଯାଇ ନାହିଁ; କିନ୍ତୁ ଆମେ କେତେଗୁଡ଼ିଏ କଥା ଜାଣିପାରିଲେଣି । ଆମେ ଜାଣିଲେ ଯେ ବାର୍‌କଲେ ଦମ୍ପତିଙ୍କ ଭିତରେ କଳି ଲାଗିଲାବେଳେ ଜଣେ ଲୋକ ରାସ୍ତାରେ ଠିଆହୋଇ ଦେଖୁଥିଲା, ପରଦା ଖୋଲାଥିଲା ଆଉ ଘରେ ଆଲୁଅ ଜଳୁଥିଲା । ଏଇ ଲୋକଟା ପାଚେରି ଡେଇଁ ପଡ଼ିଆ ଭିତରେ ଦୌଡ଼ିଯାଇ ଘରେ ପଶିଛି । ତା ସାଥିରେ ଏ ଅଦ୍ଭୁତ ଜୀବଟା ବି ଯାଇଛି । ସେ କର୍ଣ୍ଣେଲଙ୍କୁ ଆଘାତ କରିଛି; କିମ୍ବା ତାକୁ ଦେଖିଲାମାତ୍ରେ କର୍ଣ୍ଣେଲ ଭୟଭୀତ ହୋଇ ତଳେ ପଡ଼ିଯାଇଛନ୍ତି । ତାଙ୍କ ମୁଣ୍ଡ କୌଣସି ଜାଗାରେ ବାଜି କାଟି ହୋଇଯାଇଛି । ଶେଷରେ ସବୁଠୁ କୌତୂହଳପୂର୍ଣ୍ଣ କଥା ହେଲା ଏଇ ଲୋକଟା ଘରୁ ବାହାରିଗଲାବେଳେ ଚାବିଟା ନେଇଯାଇଛି ।''

''ତୁମର ଏସବୁ ଆବିଷ୍କାର ସମସ୍ୟାଟାକୁ ଅଧିକ ଜଟିଳ କରିପକାଇଲା ପରି ମନେହେଉଛି ।''

''ତା' ତ ନିଶ୍ଚୟ । ସମସ୍ୟାଟା ପ୍ରଥମେ ଯାହା ଜଣାଯାଉଥିଲା, ତା' ଅପେକ୍ଷା ବେଶି ଗହୀରରେ ବୋଲି ସନ୍ଦେହ ନାହିଁ । ମୁଁ ଠିକ୍ କରିଛି ଘଟଣାଟାକୁ ଅନ୍ୟଗୋଟେ ଦିଗରୁ ବିଚାର କରି ଦେଖିବି; କିନ୍ତୁ ମୁଁ ତୁମକୁ ଅନେକ ବେଳଯାଏ ଅନିଦ୍ରା ରଖିଲିଣି । ବରଂ କାଲି ଆଲ୍‌ଡରସ୍ ଗଲାବେଳେ ବାଟରେ ସବୁ କଥା କହିବି ।''

''ଧନ୍ୟବାଦ ! କିନ୍ତୁ କଥାଟାକୁ ତୁମେ ଏତେ ଆଗେଇନେଲଣି ଯେ ଏବେ ଆଉ କଲେ ନାହିଁ ଚଳିବ ନାହିଁ ।''

''ତେବେ ଶୁଣ । ଏଟା ନିଶ୍ଚିତ ଯେ ମିସେସ୍ ବାର୍‌କଲେ ସାଢ଼େ ସାତଟାବେଳେ ଘରୁ ଗଲେ । ସେତେବେଳେ ତାଙ୍କ ସ୍ୱାମୀଙ୍କ ସାଙ୍ଗରେ ତାଙ୍କର ଭଲ ଭାବ ଥିଲା । ସେ କେବେହେଲେ ଅତିଶୟ ଅନୁରକ୍ତି ଦେଖାନ୍ତି ନାହିଁ; କିନ୍ତୁ ସେ କର୍ଣ୍ଣେଲଙ୍କ ସାଥିରେ ହସଖୁସିରେ କଥାବାର୍ତ୍ତା କରିବା ସଇସ ଶୁଣିଛି । ଏଟା ମଧ୍ୟ ନିଶ୍ଚିତ ଯେ ସେ ଫେରିବା ପରେ ଯେଉଁ କୋଠରିକୁ ଗଲେ, ସେଠି ତାଙ୍କ ସ୍ୱାମୀଙ୍କୁ ଭେଟିବେ ବୋଲି ଭାବିନଥିଲେ । ତା'ପରେ ଜଣେ ଉତ୍ତେଜିତ ନାରୀ ପରି ଚା' ବରାଦ କଲେ । ଶେଷରେ ତାଙ୍କ ସ୍ୱାମୀ ସେ ଘରକୁ ଆସିବାରୁ ତାଙ୍କ ସାଥିରେ ତୀବ୍ର କଳିଗୋଳ କଲେ । ତେଣୁ ସାଢ଼େସାତଟାରୁ ନଅଟା

ଭିତରେ କିଛି ଗୋଟେ ଘଟିଛି, ଯାହା ଫଳରେ ମିସେସ୍ ବାର୍କଲେଙ୍କର ତାଙ୍କ ସ୍ୱାମୀ ପ୍ରତି ମନୋଭାବ ବଦଳିଯାଇଛି । କିନ୍ତୁ ସେ ସମୟରେ କୁମାରୀ ମରିସନ୍ ବରାବର ତାଙ୍କ ପାଖେ ପାଖେ ଥିଲେ । ତେଣୁ ସେ ମନାକଲେ ମଧ ଏଟା ନିଶ୍ଚିତ ଯେ ସେ ନିଶ୍ଚୟ ଏ ବିଷୟରେ କିଛି ଜାଣନ୍ତି ।

''ମୋର ପ୍ରଥମେ ଧାରଣା ହେଲା ଯେ ଏଇ ତରୁଣୀ ମରିସନ୍ ଆଉ କର୍ଣ୍ଣେଲଙ୍କ ମଧରେ କିଛି ଗୁପ୍ତ ସଂପର୍କ ଅଛି । ମରିସନ୍ କର୍ଣ୍ଣଲଙ୍କ ସ୍ତ୍ରୀଙ୍କ ଆଗରେ ଏକଥା ସ୍ୱୀକାର କରିଛନ୍ତି । ସେଥିପାଇଁ ଫେରିଲାବେଳକୁ ସେ ରାଗିଥିବାର ଯଥେଷ୍ଟ କାରଣ ଅଛି, ଆଉ ମରିସନ୍ ସେ ବିଷୟରେ କିଛି ପ୍ରକାଶ କରିନାହାନ୍ତି । ତା'ପରେ ଉଭୟଙ୍କ କଳିକଜିଆବେଳେ ଯାହା ସବୁ ଶୁଣାଯାଇଛି ସେଟା ମଧ ଅପ୍ରାସଙ୍ଗିକ ନୁହେଁ, କିନ୍ତୁ 'ଡେଭିଡ୍' ଶବ୍ଦ ଆଉ କର୍ଣ୍ଣେଲଙ୍କର ତାଙ୍କ ସ୍ତ୍ରୀଙ୍କ ପ୍ରତି ପ୍ରଗାଢ଼ ସ୍ନେହ ଏ ଯୁକ୍ତିକୁ ଖଣ୍ଡନ କରୁଛି । ମୋଟ ଉପରେ କର୍ଣ୍ଣେଲ ଆଉ କୁମାରୀ ମରିସନ୍ଙ୍କ ଭିତରେ କିଛି ସଂପର୍କ ଥିବା ଧାରଣାଟାକୁ ମୁଁ ଏକାବେଳକେ ବାଦ୍ ଦେଇଦେଲି । କିନ୍ତୁ ନିଶ୍ଚିତ ହେଲି ଯେ ଏ ଘଟଣାର ଚାବି କୁମାରୀ ମରିସନ୍ଙ୍କ ହାତରେ; ତେଣୁ ମୁଁ ତାଙ୍କ ପାଖକୁ ଗଲି । ତାଙ୍କୁ ବୁଝାଇଦେଲି ଯେ ସେ ସବୁ କଥା ଜାଣନ୍ତି ବୋଲି ମୁଁ ନିଶ୍ଚିତ । ତା'ଛଡ଼ା ଘଟଣାଟା ପରିଷ୍କାର ନ ହେଲେ ମିସେସ୍ ବାର୍କଲେ ହୁଏତ ହତ୍ୟା ଅପରାଧରେ ଦୋଷୀ ସାବ୍ୟସ୍ତ ହୋଇପାରନ୍ତି ।

''କୁମାରୀ ମରିସନ୍ ଜଣେ ଛୋଟ ଦୁର୍ବଳିଆ ଝିଅ । ଆଖିରେ ତାଙ୍କର ଭୟମିଶା ଚାହାଣି । ତା ସତ୍ତ୍ୱେ ଦେଖିଲି ତାଙ୍କର ସାଧାରଣଜ୍ଞାନ ଆଉ ଚତୁରତାର ଅଭାବ ନଥିଲା । ମୋ କଥା ସରିବା ପରେ ସେ କିଛି ସମୟ ବସି ଭାବିଲେ । ତା'ପରେ ମନ ସ୍ଥିର କରି ମୋ ଆଗରେ ତାଙ୍କ ବକ୍ତବ୍ୟ କହିଲେ । ମୁଁ ସଂକ୍ଷେପରେ ସେ କଥା କହୁଛି ।

''ସେ କହିଲେ, 'ମୁଁ ଏ ବିଷୟରେ କାହାରି ଆଗରେ କିଛି କହିବି ନାହିଁ ବୋଲି ମୋ ସାଙ୍ଗ ପାଖରେ ପଣ କରିଥିଲି, ଆଉ ପଣହିଁ ପଣ । କିନ୍ତୁ ଯେତେବେଳେ ତାଙ୍କ ବିରୁଦ୍ଧରେ ଏଡ଼େବଡ଼ ଅଭିଯୋଗ ଆସିଛି ଆଉ ବେମାର ପଡ଼ିଥିବା ହେତୁ ସେ ନିଜେ କିଛି କହିବାକୁ ଅକ୍ଷମ ଏବଂ ମୁଁ ତାଙ୍କୁ କିଛି ସାହାଯ୍ୟ କରିପାରିବି, ମୁଁ ମୋ ପଣ ଭାଙ୍ଗିବାକୁ ତିଆର ଅଛି । ସୋମବାର ଦିନ ସନ୍ଧ୍ୟାରେ କ'ଣ ଘଟିଲା ମୁଁ ସଠିକଭାବେ ଆପଣଙ୍କ ଆଗରେ କହିବି ।'

''ଆମେ ଉଆଟ୍ ଷ୍ଟ୍ରୀଟ୍‌ରୁ ଫେରୁଥିଲୁ । ସେତେବେଳକୁ ନଅଟା ବାଜିବାକୁ ପନ୍ଦର ମିନିଟ୍ ବାକିଥାଏ । ଆମେ ହଡ୍‌ସନ୍ ଷ୍ଟ୍ରୀଟ୍ ବାଟେ ଆସିଲୁ । ଏ ରାସ୍ତାଟା ଖୁବ୍ ନିରୋଳା ରାସ୍ତା । ଏ ରାସ୍ତାର ବାଁ କଡ଼ରେ ମାତ୍ର ଗୋଟିଏ ଲ୍ୟାମ୍ପ୍ ପୋଷ୍ଟ (ବତିଖୁଣ୍ଟ) । ଆମେ ସେଇ ବତିଖୁଣ୍ଟ ପାଖରେ ପହଞ୍ଚିଲାବେଳକୁ ଦେଖିଲି ଜଣେ ଲୋକ ଆମ ଆଡ଼କୁ ଆସୁଛି । ତା' ପିଠିଟା ପୂରାପୂରି ବଙ୍କା ଆଉ ତା' କାନ୍ଧରେ ବାକ୍ସ ପରି ଗୋଟେ ଜିନିଷ ଝୁଲୁଥାଏ । ଲୋକଟା ବିକଳାଙ୍ଗ ପରି ଜଣାଗଲା । ତା' ମୁଣ୍ଡଟା ତଳକୁ ଲଇଁ ପଡ଼ିଥାଏ । ଚାଲିଲାବେଳକୁ ଆଣ୍ଠୁଦି'ଟା ବଙ୍କା ହୋଇଯାଉଥାଏ । ଆମେ ତାକୁ ଡେଇଁ ଆସିଲା ବେଳକୁ ସେ ମୁଣ୍ଡ ଟେକି ଆମ ଆଡ଼କୁ ଚାହିଁଲା । ଲ୍ୟାମ୍ପର ଆଲୁଅଟା ଆମ ଉପରେ ପଡ଼ିଥାଏ । ଆମକୁ ଚାହିଁ ସେ ଠିଆ ହୋଇଗଲା । ତା'ପରେ ଭୟଙ୍କର ଭାବେ ଚିତ୍କାର କରି କହିଲା, 'ହେ ଭଗବାନ୍, ଏ ତ ନାନ୍‌ସୀ ! ମିସେସ୍ ବାର୍‌କଲେ ତାକୁ ଦେଖି ଭୟରେ ଶେତା ପଡ଼ିଗଲେ । ସେ ହୁଏତ ତଳେ ପଡ଼ିଯାଇଥାନ୍ତେ, କିନ୍ତୁ ସେ ଭୟଙ୍କର ଚେହେରାର ଲୋକଟା ତାଙ୍କୁ ଧରି ପକାଇଲା । ମୁଁ ପୋଲିସ୍‌କୁ ଡାକିବାକୁ ବସିଥିଲି; କିନ୍ତୁ ଦେଖିଲି ମିସେସ୍ ବାର୍‌କଲେ ଲୋକଟା ସାଥିରେ ସାଧାରଣ ଭଦ୍ରଭାବରେ କଥାବାର୍ତ୍ତା ଆରମ୍ଭ କଲେ । ମୁଁ ବଡ଼ ଆଶ୍ଚର୍ଯ୍ୟ ହୋଇଗଲି ।

''ଥରିଲା ଗଳାରେ ସେ କହିଲେ, 'ଦୀର୍ଘ ତିରିଶବର୍ଷ ବିତିଗଲାଣି । ମୁଁ ତ ଭାବିଲି ତୁମେ ଆଉ ଜୀବନରେ ନାହଁ ହେନ୍‌ରୀ !''

''ଲୋକଟା ଉତ୍ତର ଦେଲା, 'ତା' ଠିକ୍, ମୁଁ ବଞ୍ଚିକରି ବି ମରିଯାଇଛି ।' ଲୋକଟାର ସ୍ୱର ବଡ଼ ଭୟଙ୍କର । ତା କଳା ମୁହଁଟା ବି ବଡ଼ ଭୀଷଣ । ଆଖି ଦି'ଟା ନିଆଁପରି ଜଳୁଥାଏ । ଏବେ ବି ସ୍ୱପ୍ନରେ ସେ ଆଖିଗୁଡ଼ା ଦେଖି ମୁଁ ଡରିଯାଉଛି । ତା ମୁଣ୍ଡବାଳ, ନିଶ ସବୁ ପାଚି ଧଳା ହୋଇଯାଇଥାଏ । ତା' ମୁହଁର ଚମ ଧୁଡୁଧୁଡୁ ହୋଇଯାଇଥାଏ । ଶୁଖିଲା ଆତ ପରି ମୁହଁଯାକ ଦାଗ ।

''ମିସେସ୍ ବାର୍‌କଲେ ମୋତେ କହିଲେ, ''ତୁମେ ଟିକିଏ ଆଗକୁ ଚାଲ ମରିସନ୍ ! ମୁଁ ଏ ଲୋକଙ୍କ ସାଥିରେ ଟିକିଏ କଥା ହେବାକୁ ଚାହେଁ । ଭୟ କରିବାର କିଛି ନାହିଁ ।' ସେ ଖୁବ୍ ଦମ୍ଭଧରି କହିବାକୁ ଚେଷ୍ଟା କରୁଥାନ୍ତି, କିନ୍ତୁ ସେ ଭୟରେ ଖୁବ୍ ମଳିନ ଦେଖାଯାଉଥାନ୍ତି, ଆଉ ତାଙ୍କ ଥରିଲା ଓଠରୁ କଥାଗୁଡ଼ା ବାହାରି ପାରୁନଥାଏ । ମୁଁ ତାଙ୍କ କଥା ମାନି ଆଗେଇଗଲି । ସେ ଦୁହେଁ କିଛି ସମୟ କଥାବାର୍ତ୍ତା କଲେ । ତା'ପରେ ସେ ମୋ ପାଖକୁ ଆସିଲେ ।

ତାଙ୍କ ଆଖି ଦି'ଟା ଜଳୁଥାଏ । ଦେଖିଲି ସେ ବିକଳାଙ୍ଗ ପାଷଣ୍ଡଟା ବଡିଖୁଣ୍ଟ ପାଖେ ଠିଆହୋଇଛି । ହାତଗୁଡ଼ା ମୁଠାକରି ଉପରକୁ ଟେକିଛି - ସତେ ଯେମିତି ସେ ରାଗରେ ପାଗଳ ହୋଇଯାଇଛି । ଆମେ ଆମ ଘରଯାଏ ଆସିବା ପର୍ଯ୍ୟନ୍ତ ମିସେସ୍ ବାର୍କଲେ ପଦେ ହେଲେ କଥା କହି ନାହାନ୍ତି । ଏଠି ମୋ ହାତ ଦି'ଟା ଧରିପକାଇ ଯାହାକିଛି ଘଟିଗଲା, କାହାକୁ ନ କହିବାକୁ ମୋତେ ଅନୁରୋଧ କଲେ । କହିଲେ, 'ସେ ମୋର ଜଣେ ପୂର୍ବ ପରିଚିତ ଲୋକ, ଅନେକ ଦିନ ପରେ ଦେଖାହେଲା ।' ମୁଁ ଏକଥା କାହାକୁ କହିବି ନାହିଁ ବୋଲି ପଣ କଲି । ସେ ମୋତେ ଚୁମ୍ବନ ଦେଇ ଚାଲିଗଲେ । ତା'ପରେ ମୁଁ ଆଉ ତାଙ୍କୁ ଦେଖି ନାହିଁ । ଏବେ ମୁଁ ଆପଣଙ୍କ ଆଗରେ ସବୁ ସତ କହିଛି । ପୋଲିସ୍ ପାଖରୁ ଏକଥା ମୁଁ ଗୋପନ ରଖିଥିଲି - କାରଣ ମୋ ସାଙ୍ଗ ଯେଉଁ ବିପଦରେ ପଡ଼ିଛନ୍ତି ସେ କଥା ମୁଁ ସେତେବେଳେ ବୁଝିନଥିଲି । ଏବେ ଜାଣୁଛି ସବୁ କଥା ପ୍ରକାଶ ପାଇବା ତାଙ୍କ ପାଇଁ ମଙ୍ଗଳକର ।''

''ଏଇ ହେଲା ତାଙ୍କର ବକ୍ତବ୍ୟ ୱାଟ୍‌ସନ୍ ! ଆଉ ମୋ ପାଇଁ ଏହା ଅନ୍ଧାର ରାତିରେ ଏକ ଉଜ୍ଜଳ ଆଲୁଅ । ଆଗରୁ ଯାହାସବୁ ଅସଂଲଗ୍ନ ଜଣାଯାଉଥିଲା ଏବେ ସେସବୁ ଠିକ୍ ଜାଗାକୁ ଚାଲିଆସିଲା । ଘଟଣାଗୁଡ଼ାକର ଗୋଟେ ଝାପ୍‌ସା ଚିତ୍ର ମୁଁ ମନ ଭିତରେ ଠିକ୍ କରିପାରିଛି । ମୋର ପରବର୍ତ୍ତୀ କାମ ହେଲା ଯେଉଁ ଲୋକ ମିସେସ୍ ବାର୍କଲେଙ୍କ ଉପରେ ଏପରି ପ୍ରଭାବ ପକାଇପାରିଲା ତାକୁ ଖୋଜି ବାହାରକରିବା । ଯଦି ସେ ଆଲ୍‌ଡରସଟ୍‌ରେ ଥାଏ ତେବେ କାମଟା ମୋଟେ କଷ୍ଟକର ହେବ ନାହିଁ । କାରଣ ସେଠି ବେସମାରିକ ଲୋକ ଖୁବ୍ କମ୍ । ତା'ଛଡ଼ା ଏପରି ଗୋଟେ ବିକଳାଙ୍ଗ ଲୋକ କାହାରି ଆଖିରୁ ବାଦ୍ ଯିବ ନାହିଁ । ତାକୁ ଖୋଜିବାରେ ମୁଁ ଗୋଟାଏ ପୂରାଦିନ ଲାଗିଗଲି ଆଉ ସନ୍ଧ୍ୟାବେଳକୁ - ମାନେ ଆଜି ସନ୍ଧ୍ୟାବେଳକୁ ତାକୁ ଠାବ କଲି । ଯେଉଁ ଗଳିରେ ମହିଳା ଦି'ଜଣଙ୍କ ସାଥିରେ ତା'ର ଦେଖାହୋଇଥିଲା ସେଇ ଗଳିରେ ଗୋଟେ ଭଡ଼ାଘରେ ସେ ରହୁଛି । ତା ନାଁ ହେନ୍‌ରୀ ବଡ୍ । ମୋଟେ ପାଞ୍ଚଦିନ ହେଲା ସେ ଏଠିକି ଆସିଛି । ଜଣେ ରେଜିଷ୍ଟ୍ରେସନ ଏଜେଣ୍ଟ ଭାବରେ ଯାଇ ମୁଁ ସେ ଘର ମାଲିକାଣୀ ସାଥିରେ ଗୁଡ଼ାଏ କଥାବାର୍ତ୍ତା କରିଛି । ଲୋକଟା ଜଣେ ଯାଦୁକର । ରାତିରେ ସୈନ୍ୟମାନଙ୍କ କ୍ୟାଣ୍ଟିନ୍‌କୁ ଯାଇ ନାନାପ୍ରକାର ଖେଳ ଦେଖାଏ । ତା ସାଥିରେ ଗୋଟେ ବାକ୍ସରେ ଗୋଟାଏ କି ଜୀବ ରଖିଥାଏ ।

ଘର଼ର ମାଲିକାଣୀ ସେଭଳି ଜୀବ କେବେ ଦେଖି ନାହାନ୍ତି ବୋଲି କହିଲେ । ତାଙ୍କ କହିବା ଅନୁସାରେ ଲୋକଟା କେତେଗୁଡ଼େ ଖେଳରେ ଏ ଜୀବଟାକୁ କାମରେ ଲଗାଏ । ଘର ମାଲିକାଣୀଠାରୁ ଏତିକି ଜାଣିଲି ତାଛଡ଼ା ଜାଣିଲି ଯେ ଲୋକଟାର ଅଙ୍ଗପ୍ରତ୍ୟଙ୍ଗ ସବୁ ବଙ୍କା ! ତଥାପି ସେ ବଞ୍ଚି ରହିଛି । ଏଟା ବଡ଼ ବିଚିତ୍ର କଥା । ଲୋକଟା ବେଳେ ବେଳେ ଏକ ଅଜଣା ଭାଷାରେ କଥା କହେ । ଗଲା ଦି'ରାତି ହେଲା ଲୋକଟା ତା' ଶୋଇବାଘରେ ଗଁ-ଗଁ ହେବା ଆଉ କାନ୍ଦିବା ଘର-ମାଲିକାଣୀ ଶୁଣିଛନ୍ତି । ପଇସାପତ୍ର ଦେବାରେ ତାର ହେଳା ନାହିଁ । କିନ୍ତୁ ଥରେ ପଇସା ଦେଲାବେଳେ ସେ ଗୋଟେ ଅଚଳନ୍ତି ମୁଦ୍ରା ଦେଇଥିଲା । ମାଲିକାଣୀ ମୋତେ ସେଇଟା ଦେଖାଇଲେ । ଦେଖିଲି ସେଟା ଗୋଟେ ଭାରତୀୟ ଟଙ୍କା ।

''ଏଥର ଘଟଣାଟା ତ ଶୁଣିଲ । ବୁଝିପାରୁଥିବ ମୁଁ ତୁମକୁ ସାଥିରେ ନେବାକୁ କାହିଁକି ଚାହୁଁଛି । ଏଟା ନିଶ୍ଚିତ ଯେ ଭଦ୍ରମହିଳା ଦି'ଜଣ ବିଦାୟ ନେଇଗଲା ପରେ ଏ ଲୋକଟା ଲୁଚି ଲୁଚି ତାଙ୍କ ପଛେ ପଛେ ଯାଇଛି । ସ୍ୱାମୀ-ସ୍ତ୍ରୀଙ୍କର କଳି ସେ ଝରକାବାଟେ ଦେଖିଛି ଏବଂ ଦୌଡ଼ିଯାଇ ସେ ଘର ଭିତରେ ପଶିଛି । ସେ ବାକ୍ସଭିତରେ ରଖିଥିବା ଜୀବଟା କୌଣସି ପ୍ରକାରେ ବାକ୍ସରୁ, ଫିଟିଯାଇଛି । ଏଯାଏ ଘଟଣାଟା ବେଶ୍ ପରିଷ୍କାର ଜଣାଯାଉଛି, କିନ୍ତୁ ତା'ପରେ ଘର ଭିତରେ କ'ଣ ଘଟିଲା ସେ କଥା କେବଳ ସେଇ ଲୋକହିଁ କହିପାରିବ ।''

''ତୁମେ ତାକୁ ଏକଥା ପଚାରିବ ବୋଲି ଠିକ୍ କରିଛ ?''

''ନିଶ୍ଚୟ, କିନ୍ତୁ ଜଣେ ସାକ୍ଷୀ ସାମନାରେ ।''

''ଆଉ ମୁଁ ସାକ୍ଷୀ ହେବି ?''

''ଯଦି ତୁମର କିଛି ଅସୁବିଧା ନଥାଏ । ସେ ଲୋକଟା ଯଦି ସବୁ ସତକଥା କହିଦିଏ ତେବେ ଭଲ, ନଚେତ୍ ତା ବିରୁଦ୍ଧରେ ୱାରଣ୍ଟ ପାଇଁ ଆମେ ଦରଖାସ୍ତ କରିବାକୁ ବାଧ ହେବୁଁ ।''

''କିନ୍ତୁ ତୁମେ ଫେରିଲାବେଳକୁ ଲୋକଟା ସେଠି ଥିବ ବୋଲି ଜାଣିଲ କେମିତି ?''

''ସେଥିପାଇଁ ତୁମେ ନିଶ୍ଚିନ୍ତ ରୁହ । ମୁଁ ତାର ବ୍ୟବସ୍ଥା କରି ରଖିଛି । ବେକରଷ୍ଟ୍ରୀଟ୍ ଟୋକାଙ୍କ ଭିତରୁ ଜଣକୁ ମୁଁ ସେଠି ରଖାଇଦେଇଛି । ସେ ଛାଇ

ପରି ଲୋକଟା ପଛେ ପଛେ ଲଗିରହିବ । ଆମେ କାଲି ତାକୁ ନିଶ୍ଚୟ ହଡ୍‌ସନ୍ ଷ୍ଟ୍ରୀଟ୍‌ରେ ପାଇବା । ଏବେ ତୁମକୁ ଆଉ ବେଶି ସମୟ ଅନିଦ୍ରା ରଖିଲେ ମୁଁ ନିଜେ ଜଣେ ଅପରାଧୀ ହୋଇଯିବି ।''

ତା' ପରଦିନ ଦୁଇ ପ୍ରହର ବେଳକୁ ଆମେ ଘଟଣାସ୍ଥଳରେ ପହଞ୍ଚିଲୁ । ହୋମ୍‌ସଙ୍କ ନିର୍ଦ୍ଦେଶରେ ସାଙ୍ଗେ ସାଙ୍ଗେ ହଡ୍‌ସନ୍ ଷ୍ଟ୍ରୀଟ୍‌କୁ ଚାଲିଲୁ । ହୋମ୍‌ସ ତାଙ୍କ ମନର ଆବେଗକୁ ଚାପି ରଖିବାକୁ ଖୁବ୍ ଚେଷ୍ଟା କରୁଥାନ୍ତି । ଶେଷରେ ଆମେ ଷ୍ଟ୍ରୀଟ୍‌ରେ ପହଞ୍ଚିଲୁ । ଦି' ପାଖରେ ଇଟାର ଦୋମହଲା ଘର । ଗୋଟାଏ ଟୋକା ଆମ ପାଖକୁ ଆସି କହିଲା, 'ଲୋକଟା ଘର ଭିତରେ ଅଛି ମିଷ୍ଟର ହୋମ୍‌ସ !' ଟୋକାଟାର ପିଠିରେ ହାତ ଥାପୁଡ଼ାଇ ହୋମ୍‌ସ କହିଲେ, ''ସାବାସ୍ ସିମ୍ପସନ୍ ! ଆସ ୱାଟସନ୍, ଏଇ ଘରଟା ।'' ଏକ ଜରୁରୀ କାମରେ ଆସିଛନ୍ତି ବୋଲି ଖଣ୍ଡେ କାଗଜରେ ନିଜ ନାଁ ଲେଖି ପଠାଇଦେଲେ । ଟିକିଏ ପରେ ଆମେ ଯାଇ ଲୋକଟାର ସାମନାରେ ପହଞ୍ଚିଲୁ । ପାଗ ବେଶ୍ ଗରମ ଥିଲେ ମଧ ସେ ନିଆଁ ଉପରକୁ ଲଇଁପଡ଼ି ବସିଥାଏ । ଖଣ୍ଡେ ଚଉକି ଉପରେ ଜାକିଜୁକି ହୋଇ ବସିଥିବାରୁ ଲୋକଟା ବିକଳାଙ୍ଗ ବୋଲି ଜଣାଯାଉଥାଏ । ସେ ଆମ ଆଡ଼କୁ ମୁହଁ ବୁଲାଇଲା । ମୁହଁଟା କଳା ଆଉ ବିକୃତ ହୋଇଥିଲେ ମଧ ଜଣାଗଲା, ଦିନେ ତାହା ଖୁବ୍ ସୁନ୍ଦର ଥିଲା । ସେ ଆମ ଆଡ଼କୁ ସନ୍ଦେହୀ ଆଖିରେ ଚାହିଁଲା, ତା'ପରେ ଦି'ଟା ଚଉକି ଆଡ଼କୁ ହାତ ଠାରିଦେଲା ।

ଖୁବ୍ କଅଁଳ ଭାବରେ ହୋମ୍‌ସ କହିଲେ, ''ମୋର ବିଶ୍ୱାସ ଆପଣ ମିଷ୍ଟର ହେନ୍‌ରୀ ଉଡ୍ । ନିକଟରେ ଭାରତରୁ ଫେରିଛନ୍ତି । ମୁଁ କର୍ଣ୍ଣେଲ ବାର୍‌କଲେଙ୍କ ମୃତ୍ୟୁ ସମ୍ବନ୍ଧରେ କଥାବାର୍ତ୍ତା କରିବାକୁ ଆସିଛି ।''

''ମୁଁ ସେ ବିଷୟରେ କ'ଣ ଜାଣିବି କିପରି ?''

''ମୁଁ ତ ସେଇ କଥା ଜାଣିବା ପାଇଁ ଆସିଛି । ଆପଣ ବୋଧହୁଏ ଜାଣନ୍ତି, ଘଟଣାଟା ପରିଷ୍କାର ନ ହେଲେ ଆପଣଙ୍କ ବନ୍ଧୁ ମିସେସ୍ ବାର୍‌କଲେ ହତ୍ୟା ଅପରାଧରେ ଅଭିଯୁକ୍ତ ହେବେ ।''

ଖୁବ୍ ଜୋରରେ ଚମକି ଉଠି ଲୋକଟା କହିଲା, ''ଆପଣ କିଏ, ମୁଁ ଜାଣେନା । ଆପଣ ଯାହା ଜାଣନ୍ତି, ସେ କଥା କେମିତି ଜାଣିଲେ ତା' ବି ମୁଁ

ଜାଣେନା, କିନ୍ତୁ ଆପଣ ନିୟମ କରି କହିବେ ତ, ଯାହା କହୁଛନ୍ତି ସେ କଥା ସତ ?''

''ମିସେସ୍ ବାର୍‌କଲେ ସୁସ୍ଥ ହେବାମାତ୍ରେ ତାଙ୍କୁ ପୋଲିସ୍ ଆରେଷ୍ଟ କରିବାକୁ ଚାହିଁ ବସିଛି ।''

''ହେ ଭଗବାନ୍ ! ଆପଣ କ'ଣ ପୋଲିସ୍ ଲୋକ ?''

''ନା ।''

''ତା'ହେଲେ ଏଥିରେ ଆପଣଙ୍କର ଦର୍କାର କ'ଣ ?''

''ନ୍ୟାୟ ବିଚାର ପ୍ରତ୍ୟେକ ଲୋକର ଦର୍କାର ।''

''ଆପଣ ମୋତେ ବିଶ୍ୱାସ କରନ୍ତୁ, ସେ ସଂପୂର୍ଣ୍ଣ ନିର୍ଦ୍ଦୋଷ ।''

''ତା'ହେଲେ ଆପଣ ଦୋଷୀ ?''

''ନା, ମୁଁ ବି ନୁହେଁ ।''

''ତାହେଲେ କର୍ଣ୍ଣେଲ ଜେମ୍‌ସ ବାର୍‌କଲେଙ୍କୁ ହତ୍ୟାକଲା କିଏ ?

''ଧର୍ମ, ଧର୍ମ ହିଁ ତାକୁ ହତ୍ୟା କରିଛି । ହେଲେ ଜାଣିରଖନ୍ତୁ, ତା' ମୁଣ୍ଡଟା ଛତୁ କରିଦେବା ମୋର ଆନ୍ତରିକ ଇଚ୍ଛା ଥିଲା । ମୁଁ ତା' କରିଥିଲେ ସେ ମୋଠୁ ତାର ଉଚିତ୍ ପ୍ରାପ୍ୟ ପାଇଥାନ୍ତା । ତା ନିଜର ଦୋଷ ଆଉ ଦୁର୍ବଳତାକୁ ତା ମାରି ନଥିଲେ ହୁଏତ ମୋତେ ସେ କାମ କରିବାକୁ ପଡ଼ିଥାନ୍ତା । ଆପଣ ମୋ'ଠୁ ଘଟଣା ଶୁଣିବାକୁ ଚାହାନ୍ତି ? ନ କହିବାର କିଛି କାରଣ ମୁଁ ଦେଖୁନାହିଁ । କାରଣ ସେଥିରେ ମୋର ଲଜ୍ଜିତ ହେବାର କିଛି ନାହିଁ ।''

''ଘଟଣାଟା ହେଲା ଏଇଆ । ଆପଣ ଆଜି ମୋତେ ଏ ଅବସ୍ଥାରେ ଦେଖୁଛନ୍ତି । ମୋ ପିଠି ଓଟପିଠି ପରି କୁଜା, ଆଉ ମୋ ପଞ୍ଜରାହାଡ଼ ଦୋହଲିଯାଇଛି । ହେଲେ ଏକସମୟରେ କର୍‌ପୋରାଲ୍ ହେନ୍‌ରୀ ଉଡ୍ ୧୧୭ ସେନାଦଳର ସବୁଠୁ କାର୍ଯ୍ୟଦକ୍ଷ ଅଫିସର ଥିଲା । ଆମେ ସେତେବେଳେ ଭାରତରେ ଥାଉ । ବାର୍‌କଲେ ସେଇ ଦଳର ସର୍ଜେଣ୍ଟ ଥାଏ । ସେଠି ସବୁଠୁ ସୁନ୍ଦରୀ ରମଣୀ ଥିଲା ନାନ୍‌ସୀ ଡେଭୟେ । ସେ ସର୍ଜେଣ୍ଟ ଡେଭୟେଙ୍କ ଝିଅ । ସେଠି ଦି'ଜଣ ଲୋକ ତାକୁ ପ୍ରାଣଭରି ଭଲପାଉଥିଲେ, କିନ୍ତୁ ସେ ଜଣକୁ ଭଲପାଉଥିଲା । ଆଜି ଆପଣ ମୋର ଏ ରୂପ ଦେଖି ହସିବେ, କିନ୍ତୁ ସତ

କହୁଛି, ମୋର ସୁନ୍ଦର ଚେହେରା ଯୋଗୁଁ ସେ ମୋତେ ଭଲ ପାଉଥିଲା । ଯଦିଓ ସେ ମୋତେ ଅନ୍ତରର ସହ ଭଲପାଉଥିଲା, ତା ବାପା କିନ୍ତୁ ବାର୍କଲେ ସାଥିରେ ତାର ବିବାହ ଦେବାପାଇଁ ସ୍ଥିର କରିଥିଲେ । ମୁଁ ବିଶେଷ ପାଠଶାଠ ପଢ଼ି ନଥିଲି, ଆଉ ଲଗାମଛଡ଼ା ଥିଲି । ସେ କିନ୍ତୁ ଶିକ୍ଷିତ ଥିଲା, ଆଉ ଜଣେ ଦକ୍ଷ ସୈନିକଭାବରେ ନାଁ କରିଥିଲା । କିନ୍ତୁ ଝିଅର ମୋ ପ୍ରତି ଆନ୍ତରିକ ସ୍ନେହ ଥିଲା ଏବଂ ମୁଁ ତାକୁ ପାଇବି ବୋଲି ଦୃଢ଼ ଆଶା ଥିଲା । ଏତିକିବେଳେ ସିପାହି-ବିଦ୍ରୋହ ଦେଖାଦେଲା, ଆଉ ଦେଶସାରା ନିଆଁ ଜଳିଉଠିଲା ।

''ଆମ ସେନାଦଳ ଭୂରତି ଦୁର୍ଗରେ ଆବଦ୍ଧ ହୋଇ ରହିଗଲା । ଅଳ୍ପ କେତେକ ଗୋଲନ୍ଦାଜ ସୈନ୍ୟ, ଗୋଟାଏ କମ୍ପାନୀ ଶିଖସୈନ୍ୟଙ୍କ ବ୍ୟତୀତ ଅନେକ ବେସାମରିକ ଲୋକ, ସ୍ତ୍ରୀ, ପିଲା ଦୁର୍ଗ ଭିତରେ ରହିଗଲେ । ଆମ ଚାରିପାଖେ ପ୍ରାୟ ଦଶହଜାର ବିଦ୍ରୋହୀ ଘେରିରହିଥାନ୍ତି । ମୂଷାଯନ୍ତା ଚାରିପାଖେ ଦଳେ ବିଲେଇ ପରି ସେମାନେ ସବୁବେଳେ ସତର୍କ ରହିଥାନ୍ତି । ଏଇ ଅବସ୍ଥାରେ ରହିବାର ଦ୍ୱିତୀୟ ସପ୍ତାହରେ ଦୁର୍ଗ ଭିତରୁ ପାଣି ଶେଷ ହୋଇଆସିଲା । ସେତେବେଳକୁ ଜେନେରାଲ ନିଲ୍‌ଙ୍କ ସେନାବାହିନୀ ବହୁତ ଦୂରରେ ଥାନ୍ତି । ତାଙ୍କ ସଙ୍ଗେ ଯୋଗାଯୋଗ କରିବାର ପ୍ରଶ୍ନ ଉଠିଲା । ସେ ହେଲା ଆମର ବଞ୍ଚିବାର ଏକମାତ୍ର ଉପାୟ । କାରଣ ଆମ ଦଳରେ ଅନେକ ସ୍ତ୍ରୀ ଏବଂ ପିଲା ଥିଲେ, ତେଣୁ ବିଦ୍ରୋହୀମାନଙ୍କ ସଙ୍ଗେ ଯୁଦ୍ଧ କରି ଆମେ ଦୁର୍ଗରୁ ବାହାରିଯିବାର ଆଶା ନଥିଲା । ମୁଁ ବାହାରକୁ ଯାଇ ଜେନେରାଲ୍ ନିଲ୍‌ଙ୍କୁ ଆମ ବିପଦ କଥା ଜଣାଇବି ବୋଲି ଆଗଭର ହେଲି । ମୋ ପ୍ରସ୍ତାବ ଗ୍ରହଣ କରାଗଲା । ମୁଁ ସର୍ଜେଣ୍ଟ ବାର୍କଲେଙ୍କ ସଙ୍ଗେ ଏ ବିଷୟରେ କଥାବାର୍ତ୍ତା କଲି । ସେ ଅଞ୍ଚଳ ବିଷୟରେ ଅନ୍ୟମାନଙ୍କ ଅପେକ୍ଷା ତାଙ୍କର ଅଧିକ ଜ୍ଞାନ ଥିଲା । ବିଦ୍ରୋହୀମାନଙ୍କ ବ୍ୟୂହଭେଦ କରି ମୁଁ ଯେଉଁ ବାଟେ ଯାଇପାରିବି, ସେ ତା'ର ଗୋଟେ ନକ୍ସା କରିଦେଲେ । ସେଇ ରାତି ଦଶଟାବେଳେ ମୁଁ ବାହାରିପଡ଼ିଲି । ହଜାର ହଜାର ଜୀବନ ରକ୍ଷା କରିବା ଦାୟିତ୍ୱ ମୋ ଉପରେ, କିନ୍ତୁ ପାଚେରି କାନ୍ଥ ଡେଇଁ ବାହାରକୁ ଆସିବାବେଳେ ମୁଁ କେବଳ ଜଣକ କଥା ଚିନ୍ତା କରୁଥିଲି ।

''ମୋତେ ଗୋଟେ ଶୁଖିଲା ନାଳ ଭିତର ଦେଇ ଯିବାକୁ ହେବ, କାରଣ ଆମେ ଭାବିଥିଲୁ ତଦ୍ୱାରା ଶତ୍ରୁପକ୍ଷର ଜଗୁଆଳିମାନେ ମୋତେ ଦେଖିପାରିବେ ନାହିଁ, କିନ୍ତୁ ନାଳର ଗୋଟେ ବାଙ୍କରେ ବୁଲିଗଲାବେଳକୁ ମୁଁ ବିଦ୍ରୋହୀ ଦଳର

ଛଅ ଜଣଙ୍କୁ ସିଧାସଳଖ ହାବୁଡ଼ିଗଲି । ସେମାନେ ଅନ୍ଧାରରେ ଛପି ରହିଥିଲେ । ଆଖି ପିଛୁଳାକେ ସେମାନେ ମୋତେ ମାଡ଼ି ବସି ମୋ ଗୋଡହାତ ବାନ୍ଧିପକାଇଲେ । ମୋ ମୁଣ୍ଡରେ ବି ଜୋର୍‌ରେ ଆଘାତ କଲେ, କିନ୍ତୁ ପ୍ରକୃତ ଆଘାତଟା ମୋ ହୃଦୟରେ ହୋଇଥିଲା । ତାଙ୍କ କଥାବାର୍ତ୍ତାରୁ ମୁଁ ଯେତେଟା ବୁଝିପାରିଲି, ସେଥିରୁ ଜାଣିଲି ଯେ ମୋ ସାଥି, ଯେ କି ମୋ ଯିବାବାଟର ନକ୍‌ସା କରିଥିଲା, ସେ ବିଶ୍ୱାସଘାତକତା କରି ଜଣେ ସ୍ଥାନୀୟ ଚାକର ହାତରେ ବିଦ୍ରୋହୀମାନଙ୍କ ପାଖକୁ ମୋ ଯିବା ଖବର ପଠାଇଦେଇଥିଲା ।

''ଛାଡ଼ନ୍ତୁ - ସେ ବିଷୟରେ ବେଶି କିଛି କହିବା ଦର୍କାର ନାହିଁ । ଏବେ ଜେମ୍‌ସ ବାର୍‌କଲେର ସ୍ୱରୂପ ଜାଣିଲେ । ତା ପରଦିନ ଜେନେରାଲ୍ ନିଲ୍ ଆସି ଭୁର୍‌ତି ଦୁର୍ଗକୁ ମୁକ୍ତକଲେ, କିନ୍ତୁ ବିଦ୍ରୋହୀମାନେ ପଳାଇଗଲାବେଳେ ମୋତେ ସାଥିରେ ଧରି ନେଇଗଲେ । ସେ ଦିନଠୁ ଅନେକ ବର୍ଷ ବିତିଗଲା, ମୁଁ କୌଣସି ଗୋରାଲୋକକୁ ଦେଖିବାକୁ ପାଇଲି ନାହିଁ । ମୋ ଉପରେ ଅନେକ ଅତ୍ୟାଚାର ହେଲା । ମୁଁ ପଳେଇ ଆସିବାକୁ ଚେଷ୍ଟାକରି ଧରାପଡ଼ିଲି । ଅତ୍ୟାଚାର ଆହୁରି ବଢ଼ିଗଲା । ମୁଁ କି ଅବସ୍ଥାରେ ଥିଲି, ଆପଣ ଭାବିପାରୁଥିବେ । ବିଦ୍ରୋହୀଙ୍କ ଭିତରୁ କେତେକ ନେପାଳ ପଳାଇଲେ । ସେମାନେ ମୋତେ ସାଥିରେ ନେଇଗଲେ । ଦାର୍ଜିଲିଂଠାରେ ସେଠିକା ପାର୍ବତ୍ୟ ଲୋକ ବିଦ୍ରୋହୀମାନଙ୍କୁ ମାରିପକାଇଲେ । ମୁଁ ସେମାନଙ୍କର ଚାକର ହୋଇରହିଲି । ଶେଷରେ ସେଠୁ ଖସି ପଳାଇଆସିଲି, କିନ୍ତୁ ଦକ୍ଷିଣକୁ ନ ଆସି ମୁଁ ଉତ୍ତରକୁ ପଳାଇଲି - ଯାଇ ଆଫଗାନିସ୍ଥାନରେ ପହଞ୍ଚିଲି । ସେଠି କେତେ ବର୍ଷ ଏଣେ ତେଣେ ବୁଲିଲି । ଶେଷରେ ପଞ୍ଜାବକୁ ଯାଇ ସେଠିକା ଆଦିବାସୀଙ୍କ ମେଳରେ ରହିଲି । ଆଗରୁ ମୁଁ ମ୍ୟାଜିକ୍ ଶିଖିଥିଲି । ସେଇଆକୁ ବ୍ୟବସାୟ କରି ଚଳିଲି । ଇଂଲଣ୍ଡ ଫେରିବାକୁ ଆଉ ମନହେଲାନାହିଁ । ବିକଳାଙ୍ଗ ଓ ହୀନ ଅବସ୍ଥାରେ ଇଂଲଣ୍ଡ ଫେରିବା ବା ମୋର ପୁରୁଣା ସାଥୀମାନଙ୍କ ପାଖରେ ପହଞ୍ଚିବାରେ ଲାଭ କ'ଣ ? ଏମିତିକି ମୋର ପ୍ରତିଶୋଧ ନେବାର ଇଚ୍ଛା ମଧ୍ୟ ଇଂଲଣ୍ଡ ଫେରିବାକୁ ମୋତେ ପ୍ରବର୍ତ୍ତାଇ ପାରିଲା ନାହିଁ । ମୁଁ ମରିଯାଇଛି ବୋଲି ନାନ୍‌ସୀ ଆଉ ମୋ ବନ୍ଧୁମାନେ ଭାବିବା ବରଂ ଭଲ, କିନ୍ତୁ ଏ କଦର୍ଯ୍ୟ ରୂପ ନେଇ ବାଡ଼ିଖଣ୍ଡେ ଧରି ସିମ୍ପାଞ୍ଜି ପରି ଚାଲି ତାଙ୍କୁ ଦେଖାଦେବା ଭଲ ନୁହେଁ । ମୁଁ ନ ମରି ବଞ୍ଚିଛି ବୋଲି ସେମାନଙ୍କର ମୋଟେ ସନ୍ଦେହ ନ ଥିଲା । ମୁଁ ବି ଚାହୁଁଥିଲି ସେମାନଙ୍କ ସେ

ସନ୍ଦେହ ନ ରହୁ । ଶୁଣିଲି, ବାର୍‌କଲେ ନାନ୍‌ସୀକୁ ବିବାହ କରିଛି ଏବଂ ସୈନ୍ୟବାହିନୀରେ ତା'ର ପ୍ରମୋସନ୍ ହୋଇଛି । ତଥାପି ମୋ ପାଟି ଫିଟିଲାନାହିଁ ।

''କିନ୍ତୁ ଲୋକ ଯେତେବେଳେ ବୁଢ଼ା ହୋଇଆସେ, ଜନ୍ମଭୂଇଁକୁ ଫେରିବାକୁ ତା'ର ପ୍ରବଳ ଇଚ୍ଛା ହୁଏ । ବର୍ଷ-ବର୍ଷ ଧରି ଇଂଲଣ୍ଡର ଶାଗୁଆ ବନପ୍ରାନ୍ତର ମୁଁ ସ୍ୱପ୍ନରେ ଦେଖିଛି । ଶେଷରେ ମରିବା ଆଗରୁ ତାକୁ ଥରେ ଆଖିରେ ଦେଖିନେବା ପାଇଁ ସଂକଳ୍ପ କଲି । ମୁଁ ଯଥେଷ୍ଟ ପଇସାପତ୍ର ସଞ୍ଚୟ କରି ରଖିଥିଲି । ଶେଷରେ ଏଠି ଆସି ପହଞ୍ଚିଲି । ସେନାଛାଉଣୀ ପାଖରେ ମୋର ରହିବାର କାରଣ ହେଲା ମୁଁ ସେମାନଙ୍କ ହାବଭାବ ଆଉ ସେମାନଙ୍କୁ କେମିତି ଖୁସି କରିବାକୁ ହେବ ଜାଣେ । ତେଣୁ ଏଠି ବି' ପଇସା ରୋଜଗାର କରି ଚଳିପାରିବି ।''

ସେରଲକ୍ ହୋମ୍‌ସ କହିଲେ, ''ଆପଣଙ୍କର ବକ୍ତବ୍ୟ ଖୁବ୍ ଆଗ୍ରହପୂର୍ଣ୍ଣ । ମିସେସ୍ ବାର୍‌କଲେଙ୍କ ସହିତ ଆପଣଙ୍କ ଦେଖା ଆଉ ଚିହ୍ନାଚିହ୍ନି ବିଷୟ ମୁଁ ଶୁଣିସାରିଛି । ମୁଁ ଜାଣେ, ତା'ପରେ ଆପଣ ତାଙ୍କ ପଛେ ପଛେ ତାଙ୍କ ଘରଯାଏ ଗଲେ, ଆଉ ଝରକାବାଟେ ସ୍ୱାମୀ ସ୍ତ୍ରୀ କଳି ଲାଗିବାରେ ଦେଖିଲେ । ତା'ରି ଭିତରେ ସେ ତାଙ୍କ ସ୍ୱାମୀଙ୍କ ମୁହେଁ ମୁହେଁ ଆପଣଙ୍କ ପ୍ରତି ତାଙ୍କ ବିଶ୍ୱାସଘାତକତା କଥା ନିଶ୍ଚୟ କହିଥିବେ । ଆପଣ ଆଉ ନିଜକୁ ସମ୍ଭାଳି ପାରିନାହାନ୍ତି, ଆଉ ସେ ଘର ଭିତରକୁ ଦୌଡ଼ି ପଶିଯାଇଛନ୍ତି ।''

''ହଁ ଆଜ୍ଞା, ମୁଁ ସେଇଆ କଲି । ମୋତେ ଦେଖି ସେ ଯେମିତି ଭୟଭୀତ ହୋଇଗଲା, କେହି ଲୋକ ସେମିତି ହେବାର ଦେଖାନାହିଁ । ତା'ପରେ ସେ ତଳେ ପଡ଼ିଗଲା, ଆଉ ତା ମୁଣ୍ଡଟା ଜୋର୍‌ରେ ପିଟିହୋଇଗଲା, କିନ୍ତୁ ପଡ଼ିବା ପୂର୍ବରୁ ତା' ପ୍ରାଣ ଚାଲିଯାଇଥିଲା । ତା ମୁହଁରେ ମରଣର ଭୟଙ୍କର ରୂପ ମୁଁ ବେଶ୍ ଦେଖିପାରିଥିଲି । ମୋର ଦେଖା ହିଁ ତା'ଭଳି ବିଶ୍ୱାସଘାତକ ଅପରାଧୀ ଛାତିରେ ବୁଲେଟ ପରି ପଶିଯାଇଥିଲା ।''

''ତାପରେ କ'ଣ ହେଲା ?''

''ନାନ୍‌ସୀ ଅଚେତ ହୋଇ ପଡ଼ିଗଲା । ମୁଁ ତା' ହାତରୁ ଚାବିଟା ନେଇଆସିଲି । ଉଦ୍ଦେଶ୍ୟ ଥିଲା ଦରଜା ଖୋଲି କାହାକୁ ସାହାଯ୍ୟ ପାଇଁ ଡାକିବି ।

ଠିକ୍ ଦରଜା ଖୋଲିବାକୁ ଗଲାବେଳକୁ ଭାବିଲି ଏଥିରେ ମୋତେ ଦୋଷୀ କରାଯାଇପାରେ । ମୁଁ ଯଦି ଧରାପଡ଼େ, ସବୁ ଗପ୍ତକଥା ପଦାରେ ପଡ଼ିଯିବ - ବରଂ ମୁଁ ସେଠୁ ଚାଲିଆସିବା ଭଲ । ତରତର ହୋଇ ଚାବିଟା ପକେଟ୍‌ରେ ପୂରାଇଦେଲି । ଟେଡ଼ି ସେତେବେଳକୁ ପରଦା ଉପରକୁ ଉଠିଯାଇଥାଏ । ତାକୁ ଆଣିବାକୁ ଗଲାବେଳେ ମୋ ବାଡ଼ିଖଣ୍ଡ ହାତରୁ ପଡ଼ିଗଲା । ଶେଷରେ ତାକୁ ଆଣି ବାକ୍ସ ଭିତରେ ପୂରାଇ ଯେତେ ଶୀଘ୍ର ପାରେ ସେଠୁ ଦୌଡ଼ି ପଳାଇଆସିଲି ।''

''ଟେଡ଼ି କିଏ ?''

ଲୋକଟା ଲଇଁପଡ଼ି ଯନ୍ତା ପରି ଗୋଟେ ଜିନିଷର ସାମନାଟା ଟାଣି ଖୋଲିଦେଲା । ତା' ଭିତରୁ ଗୋଟିଏ ସୁନ୍ଦର ମାଟିଆ ରଙ୍ଗର ଜୀବ ବାହାରି ଆସିଲା । ପତଳା ନରମ ଦେହ, ଗୋଡ଼ଗୁଡ଼ା ଷ୍ଟୋଟ୍‌ର ଗୋଡ଼ପରି, ଆଖି ଦୁଇଟି ଗାଢ଼ ଲାଲ ।

ତାକୁ ଦେଖି ମୁଁ କହିଉଠିଲି, ''ଏ ତ ଗୋଟିଏ ନେଉଳ ।''

''ହଁ, ଲୋକେ ତାକୁ ନେଉଳ ବୋଲି କହନ୍ତି । ମୁଁ କିନ୍ତୁ ତାକୁ ସାପଧରା ବୋଲି କହେ । ନାଗସାପ ଧରିବାରେ ଟେଡ଼ି ଓସ୍ତାଦ୍ । ଏଠି ମୋ ପାଖରେ ଗୋଟେ ନାଗସାପ ଅଛି । ମୁଁ ତା ବିଷଦାନ୍ତ ଭାଙ୍ଗି ଦେଇଛି । ପ୍ରତିଦିନ ରାତିରେ ଟେଡ଼ି ଆଉ ସେ କ୍ୟାଣ୍ଟିନ୍‌ରେ ଖେଳ ଦେଖାନ୍ତି । ଆଉ କିଛି ଜାଣିବାର ଅଛି ଆଜ୍ଞା ?''

''ନା, ତେବେ ମିସେସ୍ ବାର୍କଲେ ଯଦି କିଛି ଅସୁବିଧାରେ ପଡ଼ନ୍ତି ତେବେ ଆମେ ପୁଣି ଆପଣଙ୍କ ପାଖକୁ ଆସିବୁ ।''

''ସେ ପରିସ୍ଥିତିରେ ମୁଁ ସବୁ ସତକଥା କହିବାକୁ ଆଗେଇଯିବି ।''

''ଯଦି ତା' ନୁହେଁ, ତେବେ ଜଣେ ମଲାଲୋକର କୁକର୍ମକୁ ଆଉ ଖୋଳିତାଡ଼ି ବାହାର କରିବାର କିଛି ଦର୍କାର ନାହିଁ । ତେବେ ଆପଣ ଜାଣି ଖୁସିହେବେ ଯେ ଏଇ ଦୀର୍ଘ ତିରିଶବର୍ଷକାଳ ତାଙ୍କର କୁକର୍ମ ପାଇଁ ତାଙ୍କ ବିବେକ ତାଙ୍କୁ ବରାବର ଦଂଶନ କରିଆସିଛି । ଏଇ ତ, ରାସ୍ତା ସେପଟେ ମେଜର୍ ମର୍‌ଫି ଯାଉଛନ୍ତି । ହଉ, ବିଦାୟ ମିଷ୍ଟର ଉଡ୍ ! ଏ ଭିତରେ କ'ଣ ଘଟିଛି ମୁଁ ଜାଣିବାକୁ ଚାହେଁ ।''

ଖୁବ୍ ଶୀଘ୍ର ଆମେ ମେଜର ମର୍‌ଫିଙ୍କୁ ଧରିନେଲୁ । ଆମକୁ ଦେଖି ସେ କହିଲେ, ''ମିଷ୍ଟର ହୋମ୍‌ସ, ଆପଣ ବୋଧହୁଏ ଶୁଣିଥିବେ ଏ ସବୁ ଘଣ୍ଟା-ଚକଟାର ଫଳ କିଛି ହେଲା ନାହିଁ ।''

''ତେବେ କ'ଣ ହେଲା ?''

''ବିଚାରବିଭାଗୀୟ ଅନୁସନ୍ଧାନ ଶେଷ ହୋଇଯାଇଛି । ଡାକ୍ତରୀ ପରୀକ୍ଷାରୁ ଜଣାଗଲା ଯେ ପକ୍ଷାଘାତ ରୋଗରୁ ମୃତ୍ୟୁ ହୋଇଛି । କେଶ୍‌ଟା ଅତି ସରଳ ।''

''ହସି ହସି ହୋମ୍‌ସ କହିଲେ, ''ହଁ, ଅତି ସରଳ । ଆଉ ୱାଟ୍‌ସନ୍, ଆଲଡରସଟ୍‌ରେ ଆମର ଆଉ କିଛି କାମ ନାହିଁ ।''

ଆମେ ରେଳ ଷ୍ଟେସନ୍‌କୁ ଚାଲି ଚାଲି ଆସିବା ବାଟରେ ମୁଁ ପଚାରିଲି, ''ଆଉ ଗୋଟେ କଥା ରହିଗଲା । ଯଦି ତାଙ୍କ ସ୍ୱାମୀଙ୍କ ନାଁ ଜେମ୍‌ସ ଆଉ ଅନ୍ୟ ଲୋକର ନାଁ ହେନେରୀ, ତେବେ କଥାବାର୍ତ୍ତାର ଏଇ ଡେଭିଡ୍ କିଏ ?''

''ମୁଁ ଯଦି ଆଉ ଟିକିଏ ଗଭୀର ଚିନ୍ତାଶୀଳ ହୋଇଥାନ୍ତି, ତେବେ ସେଇ ଗୋଟାଏ ଶବ୍ଦରୁ ହିଁ ସବୁକଥା ଜାଣିପାରିଥାନ୍ତି । ସେଇଟା ହେଲା ନିନ୍ଦା ବା ତିରସ୍କାର କରିବାର ଗୋଟେ ଶବ୍ଦ ।''

''ତିରସ୍କାର କରିବା ଶବ୍ଦ ?''

''ହଁ, ଏଇ 'ଡେଭିଡ୍' ଶବ୍ଦଟା କେତେଥର ଶୁଣାଯାଇଛି । ସେଇଟା ଅନ୍ତତଃ ଥରେ ସର୍ଜେଣ୍ଟ ଜେମ୍‌ସ ବାର୍‌କଲେଙ୍କୁ ଲକ୍ଷ୍ୟକରି କୁହାଯାଇଛି । ମୋର ବାଇବେଲ୍ ଜ୍ଞାନ ସେତେ ଭଲ ନୁହେଁ । ତଥାପି ମୁଁ ଭାବୁଛି ସାମୁଏଲ୍‌ଙ୍କ ପ୍ରଥମ କିମ୍ବା ଦ୍ୱିତୀୟ ଗଳ୍ପରେ ତୁମେ ଏ 'ଡେଭିଡ୍' ଶବ୍ଦ ପାଇବ ।



## ଡାକ୍ତର ଘରେ ରୋଗୀ

ମୋ ବନ୍ଧୁ ସେରଲକ୍ ହୋମସଙ୍କ ମାନସିକ ଶକ୍ତିର ବିଶେଷତ୍ୱ ପ୍ରମାଣ କରିବାକୁ ଉଦାହରଣ ଖୋଜିଲାବେଳେ ମୁଁ ଅନେକ ସମୟରେ ଅସୁବିଧାରେ ପଡ଼ିଯାଇଛି । ତାଙ୍କ କେଶ୍‌ରେ ଯେଉଁସବୁ ବିବରଣୀ ମୁଁ ଟିପି ରଖିଛି ତା'ଉପରେ ଆଖି ପକାଇଲେ ଦେଖୁଛି, ଯେଉଁ ସବୁ କେଶ୍‌ରେ ହୋମ୍‌ସଙ୍କର ଅନୁଶୀଳନ ଆଉ ଅନୁସନ୍ଧାନ ପଦ୍ଧତି କଳ୍ପନା କରିହେବ ନାହିଁ, ସେ କେଶ୍‌ର ବିଷୟବସ୍ତୁ ଏତେ ସାଧାରଣ ଆଉ ସାମାନ୍ୟ ଯେ ତାକୁ ଲୋକଙ୍କ ଆଗରେ ପ୍ରକାଶ କରିବା ଠିକ୍ ହେବନାହିଁ ବୋଲି ମୁଁ ଭାବୁଛି । ଅନ୍ୟପକ୍ଷରେ ଯେଉଁ ସବୁ କେଶ୍‌ର ଘଟଣା ଉଲ୍ଲେଖନୀୟ ଆଉ ନାଟକୀୟ ତା'ର କାରଣ ଅନୁସନ୍ଧାନ କରିବାରେ ସେ ଯେଉଁ କାମ କରିଛନ୍ତି, ତାହା ଉପଯୁକ୍ତ ଭାବେ ପ୍ରକାଶ ପାଇନାହିଁ । ବର୍ତ୍ତମାନ ମୁଁ ଯେଉଁ ବିଷୟ ଲେଖିବାକୁ ଯାଉଛି ସେଥିରେ ମୋ ବନ୍ଧୁ ଯେଉଁ ଭୂମିକା ନେଇଥିଲେ ତାହା ଯଥେଷ୍ଟ ଉଲ୍ଲେଖଯୋଗ୍ୟ ହୋଇ ନପାରେ; କିନ୍ତୁ ଘଟଣାବଳୀ ଏତେ ଉଲ୍ଲେଖନୀୟ ଯେ ମୋ ଲେଖାରୁ ମୁଁ ତାକୁ ବାଦ୍ ଦେଇପାରୁନାହିଁ ।

ଅଗଷ୍ଟ ମାସର ଗୋଟେ ଦିନ । ଆକାଶରେ ବହଳ ମେଘ ଘୋଟିଥାଏ । ଆମ ରୁମ୍‌ର ପରଦାଗୁଡ଼ା ଅଧା ଅଧା ଟଣା ହୋଇଥାଏ । ହୋମ୍‌ସ ଗୋଟେ ସୋଫା ଉପରେ ପଡ଼ି ସକାଳ ଡାକରେ ଆସିଥିବା ଖଣ୍ଡେ ଚିଠି ବାରମ୍ବାର ପଢୁଥିଲେ । ମୁଁ ଖବରକାଗଜଟାରେ ଆଖି ବୁଲାଉଥାଏ ।

ହୋମ୍‌ସ କହିଲେ, ''ସନ୍ଧ୍ୟା ହେଲା ପରେ ବେଶ୍ ଭଲ ପବନ ହେଉଛି । ଲଣ୍ଡନ ସହରରେ ଟିକିଏ ବୁଲିଆସିଲେ କେମିତି ହୁଅନ୍ତା ?'' ଘରଟା ଭିତରେ ବସି ବସି ମୋତେ ବିରକ୍ତ ଲାଗୁଥାଏ । ତେଣୁ ମୁଁ ଖୁସିରେ ରାଜି ହୋଇଗଲି । ତିନିଘଣ୍ଟାଯାଏ ଲଣ୍ଡନର ନାନା ସ୍ଥାନ ବୁଲି ବୁଲି ଆମେ ମଣିଷ-ଜୀବନର ପ୍ରତି ମୁହୂର୍ତ୍ତରେ ବଦଳୁଥିବା ଚିତ୍ର ସବୁ ଦେଖିଗଲୁ । ହୋମ୍‌ସ ପ୍ରତି ଜିନିଷ ଭଲଭାବେ ଲକ୍ଷ୍ୟ କରି ନାନା କଥା କହୁଥାନ୍ତି । ଶୁଣିବାକୁ ବେଶ୍ ଭଲ ଲାଗୁଥାଏ ।

ଆମେ ବେକର୍ ଷ୍ଟ୍ରୀଟ୍‌କୁ ଫେରିଲାବେଳକୁ ଦଶଟା ବାଜି ଯାଇଥିଲା । ଆମ ଘର ଆଗରେ ଗୋଟେ ଘୋଡ଼ାଗାଡ଼ି ଥୁଆ ହୋଇଥିଲା । ସେଇଟାକୁ ଦେଖି

ଦେଖି ହୋମ୍‌ସ କହିଲେ, ''ହୁଁ, ଜଣେ ଡାକ୍ତରଙ୍କ ଗାଡ଼ି । ଦେଖୁଛି ଜଣେ ସାଧାରଣ ଡାକ୍ତର । ବେଶ୍ ଦିନ ହେଲା ବ୍ୟବସାୟ କରି ନାହାନ୍ତି । ଭବିଷ୍ୟତରେ ଉନ୍ନତି କରିବେ । ଆମ ସାଥିରେ ପରାମର୍ଶ କରିବାକୁ ଆସିଛନ୍ତି । ଭାଗ୍ୟକୁ ଆମେ ଫେରିଆସିଛେ ।''

ମୁଁ ହୋମ୍‌ସଙ୍କ କାର୍ଯ୍ୟପଦ୍ଧତି ସାଥିରେ ପରିଚିତ । ତେଣୁ ସେ କେମିତି ଏକଥା ଜାଣିଲେ ବୁଝିପାରିଲି । ଗାଡ଼ି ଭିତରେ ଲ୍ୟାମ୍ପ ପାଖେ ଗୋଟେ ଜାଲି ବ୍ୟାଗ୍ ଝୁଲୁଥିଲା । ତା ଭିତରେ କେତେକ ଡାକ୍ତରୀ ଯନ୍ତ୍ରପାତି ଥିଲା । ସେଇଥିରୁ ହୋମ୍‌ସ ତାଙ୍କ ସିଦ୍ଧାନ୍ତର ସୂତ୍ର ପାଇଥିଲେ । ଆମ ଘରର ଝରକାବାଟେ ଆଲୁଅ ଦେଖା ଯାଉଥିଲା । ତେଣୁ ଭଦ୍ରଲୋକ ଆମ ପାଖକୁ ଆସିଛନ୍ତି ବୋଲି ଜାଣିବା ସହଜ । ଜଣେ ସାଙ୍ଗ ଡାକ୍ତର କାହିଁକି ଆସିଛନ୍ତି, ଜାଣିବାକୁ ମନରେ ବଡ଼ ଆଗ୍ରହ ହେଲା । ହୋମ୍‌ସଙ୍କ ପଛେ ପଛେ ଆମ ବୈଠକଖାନାକୁ ଚାଲିଲି । ନିଆଁପାଖେ ଚଉକି ଉପରେ ଜଣେ ଭଦ୍ରଲୋକ ବସିଥିଲେ । ମୁହଁ ତାଙ୍କର ଶୁଖିଯାଇଥାଏ । ତାଙ୍କ ବୟସ ତେତିଶ ଚଉତିରିଷ ବର୍ଷ ହେବ; କିନ୍ତୁ ତାଙ୍କର ଦୁର୍ବଳ ଦେହ ଆଉ ମନର ଦୁଃଖ ସତେ ଯେମିତି ତାଙ୍କ ଯୌବନକୁ ନଷ୍ଟ କରିଦେଇଛି । ଆମକୁ ଦେଖି ସେ ଚଉକିରୁ ଉଠି ଠିଆହୋଇପଡ଼ିଲେ । ତାଙ୍କ ସରୁ ଗୋରା ହାତ ଜଣେ ଡାକ୍ତର ହାତପରି ଦେଖା ନଯାଇ ବରଂ ଜଣେ ଶିଳ୍ପୀର ହାତପରି ଦେଖାଯାଉଥିଲା । ବେଶଭୂଷା ସାଧାରଣ; କିନ୍ତୁ ସୁନ୍ଦର ।

ଆଗନ୍ତୁକଙ୍କୁ ଲକ୍ଷ୍ୟ କରି ହସି ହସି ହୋମ୍‌ସ କହିଲେ, ''ଯାହାହେଉ ଆପଣ ଖୁବ୍ କମ୍ ସମୟ ହେଲା ଆସି ଅପେକ୍ଷା କରିଛନ୍ତି ।''

''ଆପଣ ତା'ହେଲେ ମୋ ଗାଡ଼ିବାଲାକୁ ପଚାରିଛନ୍ତି ?''

''ନା, ଟେବୁଲ୍ ଉପରର ଏହି ମହମବତିରୁ ଜାଣିଲି ଆପଣ ଅଳ୍ପ ସମୟ ହେଲା ଆସିଛନ୍ତି । ହଉ ବସନ୍ତୁ । କହନ୍ତୁ, ମୁଁ ଆପଣଙ୍କ ପାଇଁ କ'ଣ କରିପାରେ ।''

''ମୋ ନାଁ ଡାକ୍ତର ପର୍‌ସିଟ୍ରିଭେଲିଆନ୍, ଆଉ ମୁଁ ୪୦୩, ବ୍ରୁକ୍ ଷ୍ଟ୍ରୀଟ୍‌ରେ ରହେ ।''

''ମୁଁ ପଚାରିଲି, ''ଅଜଣା ସ୍ନାୟବିକ ରୋଗ ବିଷୟରେ ଯେଉଁ ବହି, ଆପଣ ତା'ର ଲେଖକ ନୁହନ୍ତି ତ ?''

''ମୋ କଥା ଶୁଣି ତାଙ୍କ ମୁହଁ ଉଜ୍ଜ୍ୱଳ ହୋଇଉଠିଲା ।·ସେ ଉତ୍ତର ଦେଲେ, ''ମୋ ଲେଖାକଥା ମୁଁ ପ୍ରାୟ କାହାଠାରୁ ଶୁଣେ ନାହିଁ । ମୋ ଲେଖାର ପ୍ରକାଶକ ମଧ୍ୟ କହନ୍ତି, ସେ ବହିର ମୋଟେ ବିକ୍ରି ନାହିଁ; କିନ୍ତୁ ଆପଣ ମୋ ବହିକଥା ଜାଣନ୍ତି ଶୁଣି ଖୁସିହେଲି । ଆପଣ ବୋଧହୁଏ ଜଣେ ଡାକ୍ତର ।''

''ହଁ, ସେନାବାହିନୀର ଅବସରପ୍ରାପ୍ତ ଡାକ୍ତର ।''

''ସ୍ନାୟବିକ ରୋଗ ପ୍ରତି ମୋର ବିଶେଷ ଆଗ୍ରହ । ମୁଁ ସେ ରୋଗର ବିଶେଷଜ୍ଞ ହେବାକୁ ଇଚ୍ଛା କରୁଛି; କିନ୍ତୁ ଜଣେ ଲୋକ କୌଣସି ନିର୍ଦ୍ଦିଷ୍ଟ ଜିନିଷକୁ ଅପେକ୍ଷା ନକରି ପ୍ରଥମେ ଯାହା ପାଇଲା ତାକୁ ଗ୍ରହଣ କରିବା ଦର୍କାର । ଯାହାହେଉ ବର୍ତ୍ତମାନ ସେ ପ୍ରଶ୍ନ ଉଠୁନାହିଁ । ମିଷ୍ଟର୍ ହୋମ୍ସ, ମୁଁ ଜାଣେ ଆପଣଙ୍କ ସମୟ ଅତି ମୂଲ୍ୟବାନ । କଥାଟା ହେଲା, ଗଲା କେତେ ଦିନଧରି ମୋ ବ୍ରୁକ୍ ଷ୍ଟ୍ରୀଟ୍ ଘରେ କେତେଗୁଡ଼ାଏ ଅସାଧାରଣ ଘଟଣା ଘଟିଯାଇଛି । ଆଜି ରାତିରେ ସେ ଏମିତି ଆକାର ଧାରଣକଲା ଯେ ମୁଁ ଦେଖିଲି, ଆପଣଙ୍କ ଉପଦେଶ ଆଉ ସାହାଯ୍ୟ ଲୋଡ଼ିବାରେ ଆଉ ଘଣ୍ଟାଏ ବି ବିଳମ୍ବ କରିବା ଅସମ୍ଭବ ।''

ହୋମ୍ସ ଚଉକିରେ ବସି ପାଇପଟା ଲଗାଇ କହିଲେ, ''ଆପଣ ସାହାଯ୍ୟ ଆଉ ଉପଦେଶ ଉଭୟ ପାଇବେ । ଦୟାକରି ଯେଉଁ ପରିସ୍ଥିତି ନେଇ ଆପଣ ଏତେ ବିଚଳିତ ତା' ଟିକିନିଖି କରି କହନ୍ତୁ ।''

''ସେଥିରୁ ଗୋଟେ ଦି'ଟା ଘଟଣା ଏତେ ମାମୁଲି ଯେ କହିବାକୁ ମୋତେ ଲାଜ ଲାଗୁଛି; କିନ୍ତୁ ଘଟଣାଟା ଏତେ ଦୁର୍ବୋଧ ଆଉ ଏବେ ତାହା ଏମିତି ଆକାର ଧାରଣ କରିଛି, ମୁଁ ସବୁ କଥା ଆପଣଙ୍କ ଆଗରେ କହୁଛି । ସେଥିରୁ କେଉଁଟା ଆବଶ୍ୟକ ଆଉ କେଉଁଟା ଅନାବଶ୍ୟକ, ଆପଣ ବିଚାର କରିବେ । ଆରମ୍ଭରେ ମୁଁ ମୋ କଲେଜ-ଜୀବନର କେତେଟା କଥା କହିବାକୁ ବାଧ ହେଉଛି । ମୁଁ ଲଣ୍ଡନ ଇଉନିଭରସିଟିର ଛାତ୍ର । ମୋ ଛାତ୍ରଜୀବନରୁ ପ୍ରଫେସର୍‌ମାନେ କହୁଥିଲେ ଯେ ମୋର ଭବିଷ୍ୟତ ଖୁବ୍ ଉଜ୍ଜ୍ୱଳ । ଏଟା ମୁଁ ବଢ଼ାଇକରି କହୁଛି ବୋଲି ଆପଣ କେବେ ଭାବିବେ ନାହିଁ ଏହା ମୋର ଦୃଢ଼ବିଶ୍ୱାସ । ଡାକ୍ତରୀ ପାସ୍ କଲାପରେ ମୁଁ କିଙ୍ଗ୍ସ କଲେଜ ଡାକ୍ତରଖାନାରେ ଜଣେ ସାଧାରଣ ଡାକ୍ତର ହିସାବରେ ରିସର୍ଚ୍ଚ କାମରେ ଲାଗିଲି । ମୂର୍ଚ୍ଛାରୋଗ ପ୍ରତି ମୋର ବିଶେଷ ଆଗ୍ରହ ହେଲା । ଶେଷରେ ସ୍ନାୟବିକ ମୂର୍ଚ୍ଛାରୋଗ ଉପରେ

ପ୍ରବନ୍ଧ ଲେଖି ମୁଁ ପ୍ରାଇଜ୍ ଆଉ ମେଡାଲ୍ ପାଇଲି । ମୋର ଭବିଷ୍ୟତ ଯେ ଅତି ଉଜ୍ଜ୍ୱଳ, ସମସ୍ତଙ୍କର ଏଇ ଧାରଣା ହେଲା ।''

''କିନ୍ତୁ ଅର୍ଥର ଅଭାବ ମୋର ବଡ଼ ପ୍ରତିବନ୍ଧକ ହୋଇ ଠିଆହେଲା । ଆପଣ ତ ଜାଣନ୍ତି, ଜଣେ ବିଶେଷଜ୍ଞ ଡାକ୍ତର ଉଚ୍ଚ ଆଶାକଲେ ତାକୁ କାଭେଣ୍ଡିସ୍ ସ୍କୋୟାର୍‌ର କୌଣସି ଜାଗାରେ ବ୍ୟବସାୟ ଆରମ୍ଭ କରିବାକୁ ହେବ । ସେଠି ଘରଭଡ଼ା ଆଉ ଘରର ସାଜସଜ୍ଜା ପାଇଁ ବହୁତ ଅର୍ଥ ଦର୍କାର । ଏଇ ପ୍ରାରମ୍ଭିକ ଖର୍ଚ୍ଚ ଛଡ଼ା ତାକୁ ଅନ୍ତତଃ ପାଞ୍ଚବର୍ଷ ଚଳିବା ପାଇଁ ପ୍ରସ୍ତୁତ ରହିବାକୁ ହେବ; ଆଉ ଗୋଟେ ଭଲ ଘୋଡ଼ାଗାଡ଼ି ଭଡ଼ା କରିବାକୁ ପଡ଼ିବ । ଏସବୁ କରିବାପାଇଁ ମୋର ସମ୍ବଳ ନଥିଲା । ତେଣୁ ମୋର ଏକମାତ୍ର ଆଶା ରହିଲା ଦଶବର୍ଷଯାଏ ଯାହିତାହି ଚଳି କିଛି ଅର୍ଥ ସଞ୍ଚୟ କଲାପରେ ଯାହା କିଛି କରିବି । ହଠାତ୍ କିନ୍ତୁ ଗୋଟେ ଅପ୍ରତ୍ୟାଶିତ ଘଟଣାରେ ମୋ ଉନ୍ନତିର ବାଟ ଖୋଲିଗଲା । ବ୍ଲେସିଙ୍ଗଟନ୍ ନାଁରେ ଜଣେ ଭଦ୍ରଲୋକ ମୋ ପାଖକୁ ଆସିଲେ । ସେ ମୋର ପୂରା ଅଜଣା । ଦିନେ ସକାଳେ ସେ ମୋ ଘରକୁ ଆସି ହଠାତ୍ ବ୍ୟବସାୟ କଥା ଆରମ୍ଭ କରିଦେଲେ । କହିଲେ, 'ଯେଉଁ ପରସିଟ୍ରିଭେଲିଆନ୍ ଜଣେ ମେଧାବୀ ଛାତ୍ର ଆଉ ନିକଟରେ ଗୋଟେ ବଡ଼ ପୁରସ୍କାର ପାଇଛନ୍ତି, ଆପଣ ସେଇ ତ ?'' ମୁଁ କେବଳ ମୁଣ୍ଡ ଲୁଆଇଦେଲି ।

''ସେ ପୁଣି କହିଲେ, ''ମୋ ସାଥିରେ ଖୋଲାଖୋଲି କଥାବାର୍ତ୍ତା କରନ୍ତୁ - ଆପଣଙ୍କର ଲାଭ ହେବ । ଜୀବନରେ ଉନ୍ନତି କରିବାପାଇଁ ଆପଣଙ୍କର ସବୁ ପ୍ରକାର ବୁଦ୍ଧିବିଦ୍ୟା ଅଛି । ଆପଣଙ୍କର କିଛି ବିଶେଷ ଦକ୍ଷତା ଅଛି ।''

''ତାଙ୍କର ଏ ରୋକ୍‌ଠୋକ୍ ପ୍ରଶ୍ନ ଶୁଣି ନହସି-ରହିପାରିଲି ନାହିଁ । କହିଲି, ''ଅଛି ବୋଲି ମୋର ବିଶ୍ୱାସ ।''

''କୌଣସି ଖରାପ ଅଭ୍ୟାସ, ଧରନ୍ତୁ ଏଇ ମଦ ପିଇବା ।''

ମୁଁ ମୁଣ୍ଡ ହଲାଇ ମନାକଲି ।

''ଠିକ୍ ଅଛି, କିଛି ଭାବିବେ ନାହିଁ । ମୁଁ ପଚାରିବାକୁ ବାଧ । ଆପଣଙ୍କର ଏସବୁ ଗୁଣ ଥାଇଁ ଆପଣ ଡାକ୍ତରୀ ବ୍ୟବସାୟ କରୁନାହାନ୍ତି କାହିଁକି ?''

''ମୁଁ କିଛି ନକହି ତୁନି ହୋଇ ରହିଲି । ସେ ଖୁବ୍ ବ୍ୟସ୍ତ ହେଲା ପରି କହିଲେ, ''ବୁଝିଲି, ବୁଝିଲି । ସେଇ ପୁରୁଣା କଥା । ଆପଣଙ୍କ ମୁଣ୍ଡରେ ଯଥେଷ୍ଟ ମସଲା

ଅଛି, ହେଲେ ପକେଟ୍ ଖାଲି । ଆଚ୍ଛା, ବ୍ରୁକ୍‌ଷ୍ଟ୍ରୀଟ୍‌ରେ ବ୍ୟବସାୟ ଆରମ୍ଭ କରିବାକୁ ମୁଁ ଯଦି ଆପଣଙ୍କୁ ସାହାଯ୍ୟ କରେ ?''

ମୁଁ ବିସ୍ମିତ ହୋଇ ତାଙ୍କ ମୁହଁକୁ ଚାହିଁ ରହିଲି । ସେ ପୁଣି କହିଲେ, ''ଆହା, ଆପଣଙ୍କ ପାଇଁ ନୁହେଁ, ମୋ ନିଜ ସ୍ୱାର୍ଥ ପାଇଁ ମୁଁ ଏକଥା କହୁଛି । ମୁଁ ପୂରାପୂରି ଖୋଲାଖୋଲି ଭାବେ କହୁଛି - ଆପଣଙ୍କ ମନକୁ ପାଇଲେ ହେଲା । କିଛି ଗୋଟେ ବ୍ୟବସାୟରେ ଖଟାଇବା ପାଇଁ ମୋ ପାଖରେ କିଛି ଅର୍ଥ ଅଛି - ବୁଝିଲେ । ମୁଁ ତାକୁ ଆପଣଙ୍କ ଜିମାରେ ଦେବି ।''

''କିନ୍ତୁ କାହିଁକି ?''

''ସେକଥା କହିବି । ମୁଁ ଘରଟା ଭଡ଼ାରେ ଦେବି । ଘରର ଜିନିଷପତ୍ର ବି ଠିକ୍ କରିଦେବି, ଚାକରବାକରଙ୍କ ଦରମା ଦେବି - ମୋଟଉପରେ ସବୁ କଥା ବୁଝିବି । ଆପଣ କେବଳ ଆପଣଙ୍କ ଅଫିସ୍ ରୁମ୍‌ରେ ଚଉକି ପକାଇ ବସିବେ । ଯାହା ପଇସା ପାଇବେ, ତାର ତିନିଭାଗ ମୋତେ ଦେବେ, ଆଉ ଭାଗେ ଆପଣ ନେବେ । ତା'ଛଡ଼ା ଆପଣଙ୍କ ବାଜେ ଖର୍ଚ୍ଚ ପାଇଁ କିଛି ପଇସା ମୁଁ ଦେବି । ମୁଁ ତ କିଛି ଗୋଟେ ବ୍ୟବସାୟରେ ପଇସା ଖଟାଇଥାନ୍ତି - ଇଏ ବି ଗୋଟେ ବ୍ୟବସାୟ, ଆଉ ଏଇଟା ଖୁବ୍ ନିରାପଦ ।''

''ମିଷ୍ଟର ବ୍ଲେସିଙ୍ଗଟନ୍ ମୋ ପାଖରେ ଏଇ ଅଦ୍‌ଭୁତ ପ୍ରସ୍ତାବ ଦେଲେ । ଆମ ଭିତରେ ସବୁ ଠିକ୍‌ଠାକ୍ ସରିଲା । ତା'ପରଦିନ ମୁଁ ବ୍ରୁକ୍ ଷ୍ଟ୍ରୀଟ୍‌ର ଗୋଟେ ଘରକୁ ଚାଲିଲି । ଘରଟା ଲେଡି ଡେ'ଙ୍କ ଘରପାଖେ । ସେଠି ତାଙ୍କ କହିବା ଅନୁସାରେ ମୋର ଡାକ୍ତରୀ କାମ ଆରମ୍ଭ କଲି । ସେ ନିଜେ ଆସି ଜଣେ ରୋଗୀ ଭାବରେ ମୋ ପାଖରେ ରହିଲେ । ତାଙ୍କର ଛାତି ଦୁର୍ବଳ । ତେଣୁ ସେ ସବୁବେଳେ ଡାକ୍ତରୀ ଚିକିତ୍ସାରେ ରହିଲେ । ପ୍ରଥମ ମହଲାର ସବୁଠୁ ଭଲ ବଖରା ଦି'ଟାରୁ ଗୋଟେ ବୈଠକଖାନା, ଆଉ ଗୋଟେ ତାଙ୍କ ଶୋଇବାଘର ହେଲା । ତାଙ୍କର ଅଭ୍ୟାସସବୁ ଅତି ସାଧାରଣ । ତାଙ୍କର ସାଙ୍ଗସାଥୀ କେହି ନଥିଲେ କିମ୍ବା ସେ ପ୍ରାୟ ବାହାରକୁ ଯାଆନ୍ତି ନାହିଁ । ତାଙ୍କ କାର୍ଯ୍ୟକଳାପ ବଡ଼ ଅନିୟମିତ; କିନ୍ତୁ ଗୋଟାଏ କାମରେ ସେ ଖୁବ୍ ନିୟମିତ ଥିଲେ । ପ୍ରତିଦିନ ସନ୍ଧ୍ୟା ନିର୍ଦ୍ଦିଷ୍ଟ ସମୟରେ ସେ ମୋ ଅଫିସକୁ ଆସି ଖାତାପତ୍ର ଦେଖି ମୋ ପଇସା ମୋତେ ଦେଇ ତାଙ୍କ ଭାଗଟା ନେଇ ଯାଉଥିଲେ । ଏ ପଇସା ସେ ତାଙ୍କ ଶୋଇବା ଘରେ ଲୁହା ସିନ୍ଦୁକରେ ରଖି ଦେଉଥିଲେ ।''

''ମୁଁ ଦୃଢ଼ଭାବରେ କହିବି ଯେ ମିଷ୍ଟର ବ୍ଲେସିଙ୍ଗଟନ୍ ଏ ବ୍ୟବସାୟ କରି କେବେ ପସ୍ତେଇ ନାହାନ୍ତି । ଆରମ୍ଭରୁ ବ୍ୟବସାୟ ଭଲ ଚାଲିଲା । କେତେଟା ଭଲ କେଶ୍ ଜୁଟିଗଲା । ମୋର ବି ପୂର୍ବରୁ ନାଁ ଥିଲା; ଫଳରେ ଖୁବ୍ ଶୀଘ୍ର ମୁଁ ଜଣାଶୁଣା ହୋଇଗଲି । ଗଲା ବର୍ଷେ ଦି'ବର୍ଷରେ ବେଶ୍ ରୋଜଗାର ହେଲା । ବ୍ଲେସିଙ୍ଗଟନ୍ ଖୁବ୍ ଧନୀ ହୋଇଗଲେ । ଏଇ ହେଲା ମୋର ଅତୀତ ଇତିହାସ; ଆଉ ବ୍ଲେସିଙ୍ଗଟନ୍ଙ୍କ ସାଥିରେ ମୋର ସମ୍ପର୍କ । ଏଥର ମୁଁ କାହିଁକି ଆପଣଙ୍କ ପାଖକୁ ଆସିଲି ସେ କଥା କହୁଛି । କିଛିଦିନ ତଳେ ବ୍ଲେସିଙ୍ଗଟନ୍ ମୋ ପାଖକୁ ଆସିଲେ । ମୋତେ ଜଣାଗଲା ସେ ଖୁବ୍ ଉତ୍ତେଜିତ ହୋଇଯାଇଛନ୍ତି । ଉଏଷ୍ଟଏଣ୍ଡରେ ଘଟିଥିବା ଗୋଟେ ଡକାୟତି କଥା ସେ କହିଲେ । ଜଣାଗଲା, ସେ ଅକାରଣରେ ଖୁବ୍ ବିଚଳିତ ହୋଇଯାଇଛନ୍ତି । ଆମ ଝରକା କବାଟ ସବୁ ଆହୁରି ମଜଭୁତ ଭାବେ ବନ୍ଦ କରିବା ପାଇଁ ସେ ତୁରନ୍ତ ବ୍ୟବସ୍ଥା କରିବାପାଇଁ କହିଲେ । ସପ୍ତାହେ ଯାଏ ସେ ସେମିତି ବିଚଳିତ ଅବସ୍ଥାରେ ରହିଲେ । ଝରକାବାଟେ ବରାବର ପଦାକୁ ଚାହୁଁଥାନ୍ତି । ଖାଇବା ପରେ ପଦାକୁ ଯାହା ଟିକିଏ ବୁଲିଯାଉଥିଲେ, ତାକୁ ବି ବନ୍ଦ କରିଦେଇଥାନ୍ତି । ତାଙ୍କ ଢଙ୍ଗଢାଙ୍ଗରୁ ଜାଣିପାରିଲି ସେ କୌଣସି ଲୋକ ବା କୌଣସି ଜିନିଷକୁ ପ୍ରାଣରେ ଭୟ କରୁଛନ୍ତି । ମୁଁ ତାଙ୍କୁ ସେ ବିଷୟରେ ପଚାରିଲି; କିନ୍ତୁ ସେ ଖୁବ୍ ବିରକ୍ତ ହେଲେ । ବାଧ ହୋଇ ମୁଁ ସେ କଥା ବନ୍ଦ କରିଦେଲି । ଆସ୍ତେ ଆସ୍ତେ ତାଙ୍କର ଭୟ ଦୂର ହୋଇଗଲା ପରି ଜଣାଗଲା । ସେ ପୁଣି ତାଙ୍କ ପୂର୍ବ ଅଭ୍ୟାସ ଅନୁସାରେ ଚଳିଲେ । ଏତିକିବେଳେ ଆଉ ଗୋଟେ ଘଟଣା ଘଟିଗଲା । ତା'ରି ଫଳରେ ତାଙ୍କର ଏ ଶୋଚନୀୟ ଅବସ୍ଥା ହେଲା ।''

''ଘଟଣାଟା ହେଲା ଏଇଆ - ଦି'ଦିନ ତଳେ ମୁଁ ଏ ଚିଠିଟା ପାଇଲି । ଏଥିରେ ତାରିଖ ବା କାହାରି ଠିକଣା ନାହିଁ । ଲେଖାଟା ହେଲା, ''ବର୍ତ୍ତମାନ ଇଂଲଣ୍ଡରେ ରହୁଥିବା ଜଣେ ରୁଷ୍ଦେଶର ଭଦ୍ରଲୋକ ଡାକ୍ତର ପରସିଟ୍ରିଭେଲିଆନ୍ଙ୍କଠାରୁ ଡାକ୍ତରୀ ସାହାଯ୍ୟ ଚାହାନ୍ତି । କେତେ ବର୍ଷ ହେଲା ସେ ମୂର୍ଚ୍ଛାରୋଗରେ ପଡ଼ିଛନ୍ତି । ଡାକ୍ତର ଟ୍ରିଭେଲିଆନ୍ ସେ ରୋଗର ଜଣେ ଜଣାଶୁଣା ବିଶେଷଜ୍ଞ । କାଲି ସନ୍ଧ୍ୟା ଛଅଟା ପନ୍ଦର ମିନିଟ୍‌ବେଳେ ସେ ଡାକ୍ତରଙ୍କୁ ଦେଖାକରିବାକୁ ଯିବେ । ଦୟାକରି ଡାକ୍ତର ଟ୍ରିଭେଲିଆନ୍ ସେତେବେଳେ ଘରେ ଥିବାପାଇଁ ଅନୁରୋଧ ।''

''ଚିଠିଟା ପାଇ ମୋର ଖୁବ୍ ଆଗ୍ରହ ହେଲା - କାରଣ ମୂର୍ଚ୍ଛାରୋଗ ଉପରେ ଗବେଷଣା କରିବାର ପ୍ରଧାନ ଅସୁବିଧା ହେଲା ଏ ରୋଗୀ ଖୁମ୍ କମ୍ ମିଳନ୍ତି । ତା ପରଦିନ ନିର୍ଦ୍ଦିଷ୍ଟ ସମୟରେ ମୁଁ ମୋ ରୁମ୍‌ରେ ବସିଥାଏ । ଚାକର ଟୋକା ସେ ରୋଗୀଙ୍କୁ ଘର ଭିତରକୁ ନେଇଆସିଲା ।''

''ଭଦ୍ରଲୋକ ଜଣକ ବୟସ୍କ । ପତଳା ଦେହ । ଖୁବ୍ ଶାନ୍ତ ଆଉ ଧୀର । ରୁଷ୍ ଦେଶର ଲୋକପରି ଜଣାଯାଉ ନଥିଲେ । ତାଙ୍କ ସାଥିରେ ଜଣେ ଯୁବକ । ଖୁବ୍ ଡେଙ୍ଗା । ଚେହେରା ଅତିମାତ୍ରାରେ ସୁନ୍ଦର; ମୁହଁଟା କିନ୍ତୁ ଭୟଙ୍କର । ଦେହର ମାଂସପେଶୀଗୁଡ଼ା ହର୍କିଉଲସ୍ ପରି । ସେ ରୋଗୀଜଣକ ହାତ ଧରିଥାନ୍ତି । ଘର ଭିତରକୁ ଆସିଲା ପରେ ତାଙ୍କୁ ଗୋଟେ ଚଉକିରେ ବସାଇଦେଲେ । ତା'ପରେ ଇଂରାଜୀରେ ମୋତେ କହିଲେ, ''କ୍ଷମା କରିବେ ଡାକ୍ତର ! ଏ ମୋର ବାପା । ତାଙ୍କ ସ୍ୱାସ୍ଥ୍ୟ ନେଇ ମୁଁ ବଡ଼ ଚିନ୍ତିତ ହୋଇ ପଡ଼ିଛି ।''

''ତାଙ୍କ ବିକଳଭାବ ଦେଖି ମୋ ମନରେ ସହାନୁଭୂତି ଆସିଲା । କହିଲି, ''ରୋଗୀକୁ ପରୀକ୍ଷା କଲାବେଳେ ଆପଣ ଏଠି ବସି ରହିବେ ତ ?''

''ମୋଟେ ନୁହେଁ । ମୋତେ ଭାରି ଭୟଲାଗେ । ମୋ ବାପାଙ୍କଠାରେ କିଛି ଡାକ୍ତରୀ ଅସ୍ତ୍ର ପ୍ରୟୋଗ ଦେଖିଲେ ମୁଁ ବଞ୍ଚି ପାରିବିନାହିଁ । ମୋ ନିଜର ଛାତି ବଡ଼ ଦୁର୍ବଳ । ତେଣୁ ମୁଁ ଆର ବଖରାରେ ଅପେକ୍ଷା କରୁଛି । ଆପଣ ବାପାଙ୍କୁ ଦେଖନ୍ତୁ ।''

''ମୁଁ ସେଥିରେ ରାଜିହେଲି, ଆଉ ଯୁବକ ସେଠୁ ବାହାରିଗଲେ । ରୋଗୀ ସାଥିରେ ମୁଁ ତାଙ୍କ ରୋଗ ବିଷୟରେ ଆଲୋଚନା କଲି । ସବୁ ଟିପି ରଖୁଥାଏ । ଭଦ୍ରଲୋକ ସେତେ ଚାଲାଖ ଚତୁର ଜଣାପଡୁ ନଥିଲେ । ବେଳେବେଳେ ତାଙ୍କ କଥା ବୁଝି ହେଉନଥିଲା । ମୁଁ ଭାବିଲି ଇଂରାଜୀ ଭାଷାରେ ତାଙ୍କର ଭଲ ଦଖଲ ନଥିବାରୁ ସେ ବୁଝାଇ କହିପାରୁନାହାନ୍ତି । ମୁଁ ଲେଖୁଥାଏ । ହାଠାତ୍ ସେ ମୋ ପ୍ରଶ୍ନର ଉତ୍ତର ଦେବା ବନ୍ଦ କରିଦେଲେ । ତାଙ୍କ ଆଡ଼କୁ ମୁହଁ ବୁଲାଇ ଦେଖିଲି, ସେ ଚଉକିଟା ଉପରେ କାଠପରି ବସି ମୋ ଆଡ଼କୁ ବଲବଲ କରି ଚାହିଁଛନ୍ତି । ତାଙ୍କ ଦୁର୍ବୋଧ ରୋଗ ପୁଣି ତାଙ୍କୁ ଆକ୍ରମଣ କରିଛି । ପ୍ରଥମେ ମୋ ମନରେ କେବଳ ଦୟା ନୁହେଁ, ଭୟ ମଧ୍ୟ ଆସିଗଲା । ତା'ପରେ ଡାକ୍ତରଭାବେ ମୋ ମନରେ ସନ୍ତୋଷ ଜାତହେଲା । ମୁଁ ରୋଗୀର ନାଡ଼ୀ, ଦେହର ଉତ୍ତାପ ଦେଖି ନୋଟ୍ କରିନେଲି । ତାଙ୍କ ମାଂସପେଶୀ ଆଦି ପରୀକ୍ଷାକଲି । ଦେଖିଲି କିଛି

ଅସାଧାରଣ ଜଣାପଡୁନାହିଁ । ଆଗରୁ ଏଭଳି କେଶ୍‌ରେ ମୁଁ ଆଗରୁ ନାଇଟ୍ରେଟ୍ ଆମିଲ୍ ବ୍ୟବହାର କରି ଭଲ ଫଳ ପାଇଥିଲି । ବର୍ତ୍ତମାନ ତାକୁ ପରୀକ୍ଷା କରିବାକୁ ଗୋଟେ ଭଲ ସୁଯୋଗ ମିଳିଛି; କିନ୍ତୁ ବୋତଲଟା ତଳେ ମୋ ଲାବରେଟୋରୀ (ପରୀକ୍ଷାଗାର)ରେ ଥିଲା । ତେଣୁ ରୋଗୀକୁ ସେଠି ଛାଡ଼ି ବୋତଲଟା ଆଣିବା ପାଇଁ ତଳକୁ ଗଲି । ବୋତଲଟା ଖୋଜି ଆଣିବାରେ ଟିକିଏ ଡେରି ହୋଇଗଲା - ପ୍ରାୟ ପାଞ୍ଚମିନିଟ୍ । ତା'ପରେ ଫେରିଲି । ଦେଖିଲି ଘର ଖାଲି, ରୋଗୀ ନାହିଁ । ମୁଁ ବଡ଼ ବିସ୍ମିତ ହୋଇଗଲି ।

''ପାଖ ବୈଠକଖାନାକୁ ଧାଇଁଗଲି । ସେଠି ତାଙ୍କ ପୁଅ ବି ନଥିଲେ । ବାଟ ହଲ୍‌ଘର ଦରଜାଟା ଆଉଜା ହୋଇଥିଲା । ମୋ ଚାକରଟୋକାଟା ନୂଆଲୋକ, ଆଉ ସେତେ ସିଆଣିଆ ନୁହେଁ । ସେ ତଳେ ଥାଏ, ଆଉ ଉପରୁ ମୁଁ କଲିଂବେଲ୍ ବଜାଇଲେ ସେ ରୋଗୀ ନେଇ ମୋ ପାଖକୁ ଯାଏ । ସେ ଏମାନଙ୍କୁ ଦେଖିନାହିଁ ବୋଲି କହିଲା । ତେଣୁ ରହସ୍ୟଟା କିଛି ବୁଝାପଡ଼ିଲାନାହିଁ । ଅଳ୍ପ ସମୟ ପରେ ମିଷ୍ଟର୍ ବ୍ଲେସିଙ୍ଗ୍‌ଟନ୍ ବାହାରୁ ଫେରିଲେ । କିନ୍ତୁ ମୁଁ ତାଙ୍କୁ ଏ ବିଷୟରେ କିଛି କହିଲି ନାହିଁ । ମୁଁ ବି ତାଙ୍କ ସାଥିରେ ବିଶେଷ କଥାବାର୍ତ୍ତା କରୁ ନଥିଲି ।''

''ଭାବିଥିଲି ସେ ରୁଷ୍ ଭଦ୍ରଲୋକ ବା ତାଙ୍କ ପୁଅକୁ ଆଉ ଦେଖିବି ନାହିଁ; କିନ୍ତୁ ତା' ପରଦିନ ଠିକ୍ ସେତିକିବେଳକୁ ସେ ଦୁହେଁ ପୁଣି ଆସି ଯେତେବେଳେ ମୋ ପାଖରେ ପହଞ୍ଚିଲେ ମୁଁ କେମିତି ଆଶ୍ଚର୍ଯ୍ୟ ହୋଇଯାଇଥିବି ଆପଣ ଅନୁମାନ କରିପାରୁଥିବେ । ମୋ ରୋଗୀ କହିଲେ, 'କାଲି ଏମିତି ହଠାତ୍ ଚାଲିଯାଇଥିବାରୁ ମୁଁ ଆପଣଙ୍କୁ କ୍ଷମା ମାଗୁଛି ଡାକ୍ତର ! କଥା ହେଲା, ମୁଁ ଯେତେବେଳେ ଏ ରୋଗ ଆକ୍ରମଣରୁ ଟିକିଏ ସୁସ୍ଥ ହୋଇଯାଏ ମୋ ମୁଣ୍ଡଟା ଗୋଳମାଳିଆ ହୋଇଯାଏ । ପୂର୍ବକଥା କିଛି ମନେରହେନାହିଁ । କାଲି ମଧ୍ୟ ସେଇଆ ହେଲା । ତେଣୁ ଆପଣ ନଥିବାବେଳେ ମୁଁ ସେଇ ଅବସ୍ଥାରେ ବାହାରକୁ ଚାଲିଗଲି ।'' ତାଙ୍କ ପୁଅ କହିଲେ, ''ମୁଁ ଦେଖିଲି, ବାପା ବାହାରକୁ ଯାଉଛନ୍ତି । ଭାବିଲି ଆପଣଙ୍କ ସାଥିରେ ତାଙ୍କର ପରାମର୍ଶ ଶେଷ ହୋଇଯାଇଛି । ପ୍ରକୃତ ଘଟଣାଟା ଘରେ ପହଞ୍ଚିବା ଆଗରୁ ମୁଁ ଜାଣିପାରି ନଥିଲି ।''

ହସି ହସି ମୁଁ କହିଲି, ''ସେଥିରେ କିଛି କ୍ଷତି ନାହିଁ; କିନ୍ତୁ ମୁଁ ବଡ଼ ଭୟଭୀତ ହୋଇଯାଇଥିଲି । ଯଦି ଆପଣ ମୋ ଅଫିସ୍ ରୁମ୍‌କୁ ଯିବେ ତେବେ କାଲି ହଠାତ୍ ବନ୍ଦ ହୋଇଯାଇଥିବା ଆଲୋଚନା କଥା କରିବା ।''

''ପ୍ରାୟ ଅଧଘଣ୍ଟା ଯାଏ ବୁଢ଼ା ଭଦ୍ରଲୋକଙ୍କ ସାଥିରେ ତାଙ୍କ ରୋଗର ଲକ୍ଷଣ ଆଦି ବିଷୟରେ ଆଲୋଚନା କରି ତାଙ୍କୁ ପ୍ରେସ୍‌କ୍ରିପ୍‌ସନ୍ ଲେଖିଦେଲି । ତା'ପରେ ସେ ଦୁହେଁ ବିଦାୟ ନେଇଗଲେ ।''

''ପ୍ରତିଦିନ ସେଇ ସମୟରେ ମିଷ୍ଟର ବ୍ଲେସିଙ୍ଗ୍‌ଟନ୍ ଟିକିଏ ବୁଲାବୁଲି କରିବାକୁ ବାହାରକୁ ଯାଆନ୍ତି । ସେଦିନ ଟିକିଏ ପରେ ସେ ବାହାରୁ ଫେରି ଉପର ମହଲାକୁ ଗଲେ । ମୁହୂର୍ତ୍ତକ ପରେ ସେ ତଳକୁ ଦୌଡ଼ିଆସିବା ଶୁଣିପାରିଲି, ସିଧା ମୋ ରୁମ୍ ଭିତରକୁ ପଶିଆସିଲେ । ଦେଖିଲି ସେ ଭୟରେ ପାଗଳ ପରି ହୋଇଯାଇଛନ୍ତି ।

''ମୋ ରୁମ୍ ଭିତରେ କିଏ ପଶିଥିଲା ?'' ସେ ଚିତ୍କାର କରିଉଠିଲେ ।

''କେହି ନାହିଁ ।'' ମୁଁ ଉତ୍ତର ଦେଲି ।

''ମିଛ କଥା । ଆସ ଦେଖିବ ।''

''ଦେଖିଲି ଭୟରେ ସେ ପାଗଳ । ତେଣୁ ତାଙ୍କ ଟାଣ ଟାଣ କଥାଗୁଡ଼ା କିଛି ନଧରି ତାଙ୍କ ସାଥିରେ ଉପରକୁ ଗଲି । ପତଳା ଗାଲିଚା ଉପରେ କେତେଗୁଡ଼େ ପାଦଚିହ୍ନ ପଡ଼ିଥିଲା । ସେଗୁଡ଼ା ଦେଖାଇ ସେ କହିଲେ, 'ଏଗୁଡ଼ା କ'ଣ ମୋ ପାଦଚିହ୍ନ ?'' ସେ ପାଦଚିହ୍ନଗୁଡ଼ା ତାଙ୍କ ପାଦ ତୁଳନାରେ ଯଥେଷ୍ଟ ବଡ଼ । ଖୁବ୍ କମ୍ ସମୟ ହେଲା ସେଗୁଡ଼ା ପଡ଼ିଥିବାର ଜଣାଯାଉଥିଲା । ଆଜି ଉପରବେଳା ଖୁବ୍ ଜୋର୍‌ରେ ବର୍ଷା ହୋଇଥିଲା । ମୋ ରୋଗୀ ଆଉ ତାଙ୍କ ପୁଅ ବ୍ୟତୀତ ଅନ୍ୟ କେହି ସେଠିକି ଆସି ନଥିଲେ । ତେଣୁ ମୁଁ ରୋଗୀ ସାଥିରେ କଥାବାର୍ତ୍ତା କଲାବେଳେ ତାଙ୍କ ପୁଅ କୌଣସି କାରଣରୁ ଉପରକୁ ଯାଇଥାଇପାରନ୍ତି । ଘରୁ କିଛି ଜିନିଷ ଯାଇନାହିଁ କିମ୍ବା କୌଣସିଥିରେ ହାତ ବାଜିନାହିଁ । କିନ୍ତୁ ପାଦଚିହ୍ନଗୁଡ଼ାକରୁ କେହି ଘର ଭିତରେ ନିଶ୍ଚୟ ପଶିଥିଲା ବୋଲି ସନ୍ଦେହ କରିବାର କିଛି ନଥିଲା ।

''ଏଭଳି ଘଟଣାରେ ଅବଶ୍ୟ ଯେକେହି ଲୋକ ଚିନ୍ତିତ ହୋଇପଡ଼ିବ । କିନ୍ତୁ ମିଷ୍ଟର ବ୍ଲେସିଙ୍ଗ୍‌ଟନ୍ ଅତିମାତ୍ରାରେ ବିଚଳିତ ହୋଇପଡ଼ିଥିଲେ । ଏପରିକି ସେ ଚଉକିଟା ଉପରେ ବସି କାନ୍ଦିପକାଇଲେ । ବହୁ କଷ୍ଟରେ ମୁଁ ତାଙ୍କୁ ବୁଝାସୁଝା କରାଇଲି । ଆପଣଙ୍କ ପାଖକୁ ଆସିବାକୁ ସେ ମୋତେ କହିଲେ । ମୁଁ ବି ଦେଖିଲି ଘଟଣାଟା ସେତେ ଗୁରୁତ୍ୱପୂର୍ଣ୍ଣ ନ ହେଲେ ବି ଅସାଧାରଣ । ଆପଣ ଯଦି

ଦୟାକରି ମୋ ଗାଡ଼ିରେ ଯାଇପାରନ୍ତେ ତେବେ ତାଙ୍କୁ ଅନ୍ତତଃ ସାନ୍ତ୍ୱନା ଦେଇପାରନ୍ତେ । ଅବଶ୍ୟ ଏ ଘଟଣା ବିଷୟରେ ଆପଣ କିଛି କହିପାରିବେ ଆଶା ମୋର ନାହିଁ ।''

ହୋମ୍ସ ମନଧ୍ୟାନ ଦେଇ ଏକ ଲମ୍ବା ବକ୍ତବ୍ୟ ଶୁଣୁଥାନ୍ତି । ସେଥିରୁ ଜାଣିଲି ଘଟଣାଟା ପ୍ରତି ତାଙ୍କର ଆଗ୍ରହ ଆସିଯାଇଛି । ଡାକ୍ତରଙ୍କ କଥା ଶେଷହେଲା ମାତ୍ରେ ସେ କିଛି ନକହି ଚଟ୍‌କରି ଉଠି ଠିଆ ହୋଇଗଲେ । ମୋ ଟୋପିଟା ମୋ ଆଡ଼କୁ ବଢ଼ାଇଦେଇ ତାଙ୍କ ଟୋପିଟା ହାତରେ ଧରି ଡାକ୍ତର ଟ୍ରିଭେଲିଆନ୍‌ଙ୍କ ପଛେ ପଛେ ତଳକୁ ଆସିଲେ । ପନ୍ଦର ମିନିଟ୍ ଭିତରେ ଆମେ ବ୍ରୁକ୍‌ଷ୍ଟ୍ରୀଟ୍‌ରେ ଡାକ୍ତରଙ୍କ ଘରେ ପହଞ୍ଚିଲୁ । ଚାକରଟୋକା ଦରଜା ଖୋଲିଦେଲା । ଶିଡ଼ିବାଟେ ଆମେ ଉପରକୁ ଚାଲିଲୁ ।

ହଠାତ୍ ଏକ ଅସାଧାରଣ ବାଧା ଆମ ଆଗରେ ପହଞ୍ଚିଲା । ଉପରର ଆଲୁଅ ଲିଭିଯାଇଥାଏ । ଅନ୍ଧାର ଭିତରୁ ଏକ ରୁକ୍ଷ ଥରିଲା କଣ୍ଠସ୍ୱର ଶୁଣାଗଲା ।

''ମୋ ହାତରେ ପିସ୍ତଲ ଅଛି । ଆଉ ଟିକିଏ ଆଗକୁ ବଢ଼ିଲେ ମୁଣ୍ଡ ଉଡ଼ାଇଦେବି ।''

ଡାକ୍ତର ଟ୍ରିଭେଲିଆନ୍ କହିଉଠିଲେ, ''ଏ କ'ଣ ? ଆପଣ ଏତେ ରାଗିଯାଇଛନ୍ତି କାହିଁକି ମିଷ୍ଟର ବ୍ଲେସିଙ୍ଗଟନ୍ ?''

''ଓହୋ । ତୁମେ ଡାକ୍ତର ? ହେଲେ ତୁମ ସାଥିରେ ସେମାନେ କିଏ ? ହଁ, ହଁ ବୁଝିଲି । ଉପରକୁ ଆସ । ମୋର ଏ ବ୍ୟବହାର ପାଇଁ କ୍ଷମାକରିବ ।'' କହୁ କହୁ ସେ ଆଲୁଅଟା ପୁଣି ଜଳାଇଦେଲେ । ଦେଖିଲୁ ଆମ ଆଗରେ ଜଣେ ଅସାଧାରଣ ମଣିଷ । ତାଙ୍କ ଚେହେରା ଆଉ କଥା ତାଙ୍କ ଦୁର୍ବଳ ଛାତି ସାଥିରେ ଖାପ୍ ଖାଉଥିଲା । ସେ ଖୁବ୍ ମୋଟା । ଆଗରୁ ଆହୁରି ବେଶି ମୋଟା ଥିଲେ । ମୁହଁର ଚମ ବ୍ଲଡ୍‌ହାଉଣ୍ଡ ପରି ତଳକୁ ଝୁଲିପଡ଼ିଥାଏ । ଉତ୍ତେଜନାରେ ଦେହର ମାଟିଆ ଲୋମସବୁ ଠିଆ ଠିଆ ହୋଇଯାଇଥାଏ । ସେ ହାତରେ ପିସ୍ତଲ ଧରିଥାନ୍ତି, କିନ୍ତୁ ଆମକୁ ଦେଖିଲା ପରେ ସେଟା ପକେଟ୍‌ରେ ପୂରାଇଦେଲେ । ଆମକୁ ଚାହିଁ କହିଲେ, 'ମିଷ୍ଟର୍ ହୋମ୍ସ, ଆପଣ ଦୟାକରି ଏଠିକି ଆସିଛନ୍ତି, ମୁଁ ବଡ଼ କୃତଜ୍ଞ । ମୋର ଆପଣଙ୍କ ଉପଦେଶ ଯେତେ ଲୋଡ଼ା, ଆଉ କେହି ବୋଧହୁଏ ସେତେ ଲୋଡ଼ି ନଥିବେ । ଡାକ୍ତର ଟ୍ରିଭେଲିଆନ୍ ଆପଣଙ୍କୁ ନିଶ୍ଚୟ ମୋ ଘର ଭିତରେ କେହି ପଶିବା କଥା କହିଥିବେ ?''

''ହଁ, କହିଛନ୍ତି । ଏ ଦି'ଜଣ ଲୋକ କିଏ ମିଷ୍ଟର ବ୍ଲେସିଙ୍ଗଟନ୍ ! ଆଉ ସେମାନେ ଆପଣଙ୍କ ଉପରେ ଆଖି ପକାଇବାର କାରଣ କ'ଣ ?''

''ସେ କଥା ମୁଁ କହିପାରିବି କେମିତି ।''

''ତାହେଲେ ଆପଣ କିଛି ଜାଣନ୍ତି ନାହିଁ ?''

''ହଉ, ଦୟାକରି ଏ ଘର ଭିତରକୁ ଆସନ୍ତୁ ।'' ସେ ଆମକୁ ତାଙ୍କ ଶୋଇବାଘରକୁ ଡାକିନେଲେ । ବେଶ୍ ବଡ଼ଘର ବଖରାଏ । ସାଜସଜ୍ଜା ଖୁବ୍ ଭଲ । ତାଙ୍କ ଖଟ ପାଖରେ ଗୋଟେ ବଡ଼ କଳା ବାକ୍ସ ଥୁଆହୋଇଥିଲା । ସେ ଆଡ଼କୁ ହାତଠାରି ସେ କହିଲେ, ''ଏଇଟା ଦେଖୁଛନ୍ତି ? ମୁଁ କେବେ ସେତେ ବେଶୀ ଧନୀ ନ ଥିଲି ବା ନୁହେଁ । ଜୀବନରେ ଗୋଟିଏ ବ୍ୟବସାୟ ଛଡ଼ା ଆଉ କେଉଁଥିରେ ଟଙ୍କା ଖଟାଇ ନାହିଁ । କିନ୍ତୁ ମୁଁ ବ୍ୟାଙ୍କ୍ ଉପରେ ବିଶ୍ୱାସ କରେ ନାହିଁ । ମୋର ଯାହା କିଛି ଲାଭ ହେଲା ସବୁ ଏଇ ବାକ୍ସରେ ଅଛି । ତେଣୁ କେହି ଅଜଣା ଲୋକ ମୋ ଘର ଭିତରେ ପଶିଲେ ମୋ ଅବସ୍ଥା କ'ଣ ହେବ ଆପଣ ଅନୁମାନ କରିପାରୁଥିବେ ।''

ହୋମ୍‌ସ ପ୍ରଶ୍ନକଲା ଭଙ୍ଗୀରେ ମିଷ୍ଟର ବ୍ଲେସିଙ୍ଗଟନ୍‌ଙ୍କ ଆଡ଼କୁ ଚାହିଁ ମୁଣ୍ଡହଲାଇ କହିଲେ, ''ଆପଣ ଯଦି ମୋତେ ଠକିବାକୁ ଚେଷ୍ଟା କରନ୍ତି ତେବେ ମୁଁ ବୋଧହୁଏ ଆପଣଙ୍କୁ କିଛି ଉପଦେଶ ଦେଇପାରିବି ନାହିଁ ।''

''କିନ୍ତୁ ମୁଁ ତ ଯାହା କହିବାର କହିସାରିଛି ।''

ହୋମ୍‌ସ ବିରକ୍ତ ହୋଇ ବୁଲିପଡ଼ି କହିଲେ, ''ବିଦାୟ ଡାକ୍ତର ଟ୍ରିଭେଲିଆନ୍ !''

''ଆଉ ମୋ ପାଇଁ କିଛି ଉପଦେଶ ନାହିଁ ?'' ପଚାରିଲେ ମିଷ୍ଟର ବ୍ଲେସିଙ୍ଗଟନ୍ ।

''ମୋ ଉପଦେଶ ହେଲା, ଆପଣ ସତ କହିବେ ।''

ମିନିଟ୍‌କ ପରେ ଆମେ ଆସି ରାସ୍ତା ଉପରେ । ଚାଲି ଚାଲି ଘରକୁ ଫେରିଲୁ । ଅକ୍ସଫୋର୍ଡ଼ ଷ୍ଟ୍ରୀଟ୍ ଯାଏ ଆସିବା ପର୍ଯ୍ୟନ୍ତ ହୋମ୍‌ସଙ୍କ ମୁହଁରୁ ପଦେ ବି କଥା ଶୁଣିଲି ନାହିଁ । ଶେଷରେ ସେ କହିଲେ, ''ଜଣେ ବୋକା କଥାରେ ପଡ଼ି ତୁମକୁ ଏତେ ବାଟ ଆଣିଥିବାରୁ ମୁଁ ଦୁଃଖିତ ୱାଟ୍‌ସନ୍ ! କିନ୍ତୁ କେଶ୍‌ଟା ଖୁବ୍ କୌତୂହଳପୂର୍ଣ୍ଣ, ବିଶେଷତଃ କେଶ୍‌ର ମୂଳଟା ।''

''ମୁଁ ତ ଏଥିରୁ କିଛି ବୁଝିପାରୁନାହିଁ ।''

''ଏଟା ନିଶ୍ଚିତ ଯେ ଘଟଣାରେ ଦି'ଜଣ ଲୋକ ସଂପୃକ୍ତ । ଅଧିକ ବି ଥାଇପାରନ୍ତି । ତେବେ ନିହାତି କମ୍‌ରେ ଦି'ଜଣ ଅଛନ୍ତି । କୌଣସି କାରଣରୁ ସେମାନେ ଏଇ ବ୍ଲେସିଙ୍ଗଟନ୍ ପଛରେ ଲାଗିଛନ୍ତି । ଦି'ଥର ଯାକ ସେ ଯୁବକ-ଜଣକ ବ୍ଲେସିଙ୍ଗଟନ୍‌ଙ୍କ ଶୋଇବାଘରେ ପଶିଛି, ଆଉ ତା ସାଥୀ ଡାକ୍ତରଙ୍କୁ ଗୋଟେ ବିଚିତ୍ର ଉପାୟରେ ଅଟକାଇ ରଖିଛି । ଏଥିରେ ମୋର ଟିକିଏ ହେଲେ ସନ୍ଦେହ ନାହିଁ ।''

''ଆଉ ସେ ମୂର୍ଚ୍ଛାରୋଗ କଥା ?''

''ସେଇଟା କେବଳ ଛଳନା । ଅବଶ୍ୟ ଆମ ବିଶେଷଜ୍ଞ ଡାକ୍ତରଙ୍କ ପ୍ରତି ମୋର କିଛି ଆକ୍ଷେପ କରିବାର ନାହିଁ । ମୂର୍ଚ୍ଛାରୋଗୀର ଛଳନା କରିବାଟା ଖୁବ୍ ସହଜ । ମୁଁ ନିଜେ ବି କେତେଥର ତା କରିଛି ।''

''ତା' ପରେ ?''

''ଦୈବାତ୍ ଦି' ଥରଯାକ ବ୍ଲେସିଙ୍ଗଟନ୍ ଘରେ ନାହାନ୍ତି । ସେମାନେ ଏମିତି ଗୋଟେ ସମୟରେ ଆସିଛନ୍ତି, ଯେତେବେଳେ ଅନ୍ୟ କେହି ରୋଗୀ ନଥିବେ । ଜଣାଯାଉଛି ଯେ ବ୍ଲେସିଙ୍ଗଟନ୍ କେତେବେଳେ କ'ଣ କାମ କରନ୍ତି, ସେକଥା ସେମାନଙ୍କୁ ଜଣାନାହିଁ । ସେମାନେ ଯଦି କେବଳ ଚୋରିକରିବା ଉଦ୍ଦେଶ୍ୟରେ ଆସିଥାନ୍ତେ, ତା'ହେଲେ ନିଶ୍ଚୟ କିଛି ଖୋଜାଖୋଜି କରିଥାନ୍ତେ । ତା' ଛଡ଼ା ଜଣେ ଲୋକ ତା' ନିଜ ଜୀବନକୁ ଭୟକରୁଛି ବୋଲି ମୁଁ ତା ଆଖିରୁ ଜାଣିପାରିବି । ଜଣେ ଲୋକ ଉପରେ ଦାଉ ସାଧିବାକୁ ଏମିତି ଦି'ଜଣ ଦୁର୍ଦ୍ଧାନ୍ତ ଶତ୍ରୁ ଅଛନ୍ତି, ଅଥଚ ସେ କିଛି ଜାଣେ ନାହିଁ - ଏ କଥା କେବେ କଳ୍ପନା କରାଯାଇପାରେନା । ତେଣୁ ମୁଁ ନିଶ୍ଚିତ ଯେ ସେ ଲୋକ ଦି'ଜଣ କିଏ ସେ ଜାଣେ, କିନ୍ତୁ କୌଣସି କାରଣରୁ ସେକଥା ଲୁଚାଉଛି । କାଲିକି ହୁଏତ ସେ ସତ କହିପାରେ ବୋଲି ମୋର ଆଶା ।''

''ଆଚ୍ଛା, ଅନ୍ୟ କିଛି ବିକଳ୍ପ ସମ୍ଭାବନା କ'ଣ ଅନୁମାନ କରାଯାଇପାରେନା । ସେଟା ହୁଏତ ସମ୍ଭବ ହୋଇନପାରେ । ଧର ଏଇ ଡାକ୍ତର ଟ୍ରିଭେଲିଆନ୍ । ସେ ନିଜର କିଛି ଉଦ୍ଦେଶ୍ୟ ନେଇ ବ୍ଲେସିଙ୍ଗଟନ୍‌ଙ୍କ ରୁମ୍‌କୁ ଯାଇଥାଇପାରନ୍ତି । ଏଇ ରୁଷ ରୋଗୀ ଆଉ ତାଙ୍କ ପୁଅକଥା ସେ ମନରୁ ଗଢ଼ି କହି ପାରନ୍ତି ।''

ମୋର ଏ ଚମତ୍କାର କଳ୍ପନା ଶୁଣି ହୋମ୍‌ସ ସାମାନ୍ୟ ହସିବାର ଦେଖିଲି । ସେ କହିଲେ, ''ବୁଝିଲ ଡାକ୍ତର ! ପ୍ରଥମେ ମୋ ମନରେ ବି ସେଇ କଥା ଉଠିଥିଲା, କିନ୍ତୁ ଡାକ୍ତରଙ୍କ କଥା ସତ ବୋଲି ଖୁବ୍ ଶୀଘ୍ର ଜାଣିପାରିଲି । ଶିଡ଼ି ଉପରେ ପଡ଼ିଥିବା ଗାଲିଚା ଉପରେ ସେ ଯୁବକର ପାଦଚିହ୍ନ ପଡ଼ିଥିବାର ମୁଁ ଦେଖିଲି । ତେଣୁ ଘର ଭିତରେ ଥିବା ପାଦଚିହ୍ନ ଦେଖିବାକୁ ମୁଁ ଦର୍କାର କଲିନାହିଁ । ସେ ପାଦଚିହ୍ନ ବ୍ଲେସିଙ୍ଗଟନ୍‌ଙ୍କର ନୁହେଁ କିମ୍ବା ଡାକ୍ତରଙ୍କର ନୁହେଁ ବୋଲି ଜାଣିବାରେ ମୋର କିଛି ଅସୁବିଧା ହେଲା ନାହିଁ । ତେଣୁ ତୁମେ ନିଶ୍ଚୟ ସ୍ୱୀକାର କରିବ ଯେ ଅନ୍ୟ କେହି ଲୋକ ଘର ଭିତରକୁ ଯାଇଛି । ଏବେ ଆଉ ସେ କଥା ଆଲୋଚନା କରିବା ଦର୍କାର ନାହିଁ । କାଲି ସକାଳେ ଆମେ ଯଦି ବ୍ରୁକ୍ ଷ୍ଟ୍ରୀଟ୍‌ରୁ କିଛି ସମ୍ବାଦ ନ ପାଇବା, ତେବେ ସେଟା ହେବ ବଡ଼ ଆଶ୍ଚର୍ଯ୍ୟ କଥା ।''

ସେରଲକ୍ ହୋମ୍‌ସଙ୍କ କଥା ଅକ୍ଷରେ ଅକ୍ଷରେ ସତ ହେଲା । ସେଟା ବି ବେଶ୍ ନାଟକୀୟ ଭଙ୍ଗୀରେ । ତା'ପରଦିନ ସକାଳ ସାଢ଼େ ସାତଟାବେଳେ ଫିକା ଆଲୁଅରେ ମୁଁ ଦେଖିଲି ସେ ପୋଷାକପତ୍ର ପିନ୍ଧି ମୋ ଖଟ ପାଖେ ଠିଆ ହୋଇଛନ୍ତି । କହିଲେ, ''ବାହାରେ ଗୋଟେ ଘୋଡ଼ାଗାଡ଼ି ଆମପାଇଁ ଅପେକ୍ଷା କରିଛି ୱାଟ୍‌ସନ୍ ।''

''ତା' ହେଲେ ଘଟଣା କ'ଣ ?''

''ସେଇ ବ୍ରୁକ୍ ଷ୍ଟ୍ରୀଟ୍ ଧନ୍ଦା ।''

''ଆଉ କିଛି ନୂଆ ଖବର ?''

''ଦୁର୍ଘଟଣା, କିନ୍ତୁ ସନ୍ଦେହଜନକ । ଏଇ ଦେଖ ।'' ପରଦାଟା ଆଡ଼େଇଦେଇ ଖଣ୍ଡେ କାଗଜ ସେ ଦେଖାଇଲେ । ସେଥିରେ ଲେଖାଥିଲା, ''ଦୟା କରି ଶୀଘ୍ର ଆସନ୍ତୁ ।'' ତଳେ ପେନ୍‌ସିଲ୍‌ରେ ପରସି ଟ୍ରିଭେଲିଆନ୍‌ଙ୍କ ଦସ୍ତଖତ । ହୋମ୍‌ସ ପୁଣି କହିଲେ, ''ଆମ ଡାକ୍ତର ବନ୍ଧୁ ବହୁତ କଷ୍ଟରେ ଏଖଣ୍ଡ ଲେଖିଛନ୍ତି । ଆସ ଯିବା । କାରଣ ଏଟା ବଡ଼ ଜରୁରୀ କାମ ।''

ପନ୍ଦର ମିନିଟ୍ ଭିତରେ ଆମେ ଡାକ୍ତରଙ୍କ ଘରେ ପହଞ୍ଚିଲୁ । ଆମକୁ ଦେଖି ସେ ଘର ଭିତରୁ ଧାଇଁଆସିଲେ । ତାଙ୍କ ମୁହଁରେ ଭୟ ଆଉ ଆତଙ୍କ ପୂରିରହିଥାଏ । କପାଳରେ ହାତମାରି ସେ କହିଲେ, ''ପ୍ରଭୁ ! ଏ କି ଧନ୍ଦା !''

''ଘଟଣା କ'ଣ ?''

''ମିଷ୍ଟର ବ୍ଲେସିଙ୍ଗଟନ୍ ଆତ୍ମହତ୍ୟା କରିଛନ୍ତି ।''

ହୋମ୍‌ସ ସାମାନ୍ୟ ଟିକିଏ ଚିନ୍ତା କଲାପରି ଜଣାଗଲା । ଡାକ୍ତର ପୁଣି କହିଲେ, ''ହଁ ଆଜ୍ଞା, ରାତିରେ ସେ ବେକରେ ଦଉଡ଼ି ଲଗାଇ ଦେଇଛନ୍ତି ।''

ଆମେ ଘର ଭିତରକୁ ଗଲୁ । ଡାକ୍ତର ବିକଳହୋଇ କହିଲେ, ''ମୁଁ କ'ଣ କରିବି କିଛି ଭାବିପାରୁ ନାହିଁ । ପୋଲିସ୍ ଆସି ଉପରେ ଅଛନ୍ତି । ମୁଁ ପୂରା ବିଚଳିତ ହୋଇପଡ଼ିଛି ।''

''ଏ ଆତ୍ମହତ୍ୟା କଥା ଆପଣ ଜାଣିଲେ କେତେବେଳେ ?

''ପ୍ରତିଦିନ ସକାଳେ ସେ କପେ ଚା' ଖାଆନ୍ତି । ଆଜି ସକାଳ ସାତଟା ବେଳେ ଚାକରାଣୀ ଚା' ନେଇଗଲା । ଦେଖିଲା ଘର ମଝିରେ ବିଚରା ହତଭାଗା ବ୍ଲେସିଙ୍ଗଟନ୍ ଝୁଲୁଛନ୍ତି । ଛାତରେ ଥିବା ହୁକ୍‌ରେ ଦଉଡ଼ିଟା ବାନ୍ଧି ବେକରେ ଲଗାଇ ସେ ବାକ୍ସଟା ଉପରୁ ଡେଇଁ ପଡ଼ିଛନ୍ତି ।''

ହୋମ୍‌ସ କିଛି ସମୟ ଖୁବ୍ ଚିନ୍ତାକଲାପରି ଠିଆହୋଇରହିଲେ । ତା' ପରେ କହିଲେ, ''ଆପଣ ଅନୁମତି ଦେଲେ ମୁଁ ଉପରକୁ ଯାଇ ଘଟଣାଟା ଦେଖିବି ।''

ଆମେ ତିନିଜଣ ଯାକ ଉପରକୁ ଉଠିଲୁ । ବ୍ଲେସିଙ୍ଗଟନ୍‌ଙ୍କ ଶୋଇବା ଘର ଭିତରକୁ ପଶିବାମାତ୍ରେ ଏକ ଭୟଙ୍କର ଦୃଶ୍ୟ ଆଖିରେ ପଡ଼ିଲା । ଆଗରୁ କହିଛି, ବ୍ଲେସିଙ୍ଗଟନ୍‌ଙ୍କ ମୁହଁର ଚମ ତଳକୁ ଝୁଲି ପଡ଼ିଥିଲା । ହୁକ୍‌ରେ ତାଙ୍କ ଦେହଟା ଝୁଲିଥିବାରୁ ମୁହଁଟା ବଡ଼ କଦର୍ଯ୍ୟ ଦେଖାଯାଉଥାଏ । ସେଟା ମଣିଷ ମୁହଁପରି ଜଣାଯାଉନଥାଏ । ବେକଟା କୁକୁଡ଼ା ବେକପରି ମୋଡ଼ି ହୋଇଯାଇଥାଏ । ଦେହଟା ଆହୁରି ବେଶି ମୋଟା ଆଉ ବିକୃତ ହୋଇଯାଇଥାଏ । ତାଙ୍କ ଲମ୍ବା ରାତିପିନ୍ଧା ପୋଷାକଟା ଦେହରେ ଥାଏ ।ୀ ତା' ତଳୁ ତାଙ୍କ ଫୁଲିଲା ବଳାଗଣ୍ଠି ଆଉ ପାଦ ଦିଶୁଥାଏ । ପାଖରେ ଜଣେ ପୋଲିସ୍ ଅଫିସର୍ ଠିଆହୋଇଥାନ୍ତି । ପକେଟ୍ ବୁକ୍‌ରେ କ'ଣ ସବୁ ଲେଖୁଥାନ୍ତି । ହୋମ୍‌ସ ଘରଭିତରକୁ ପଶିବାମାତ୍ରେ ସେ କହିଲେ, ''ଆରେ, ମିଷ୍ଟର ହୋମ୍‌ସ ଯେ । ଆପଣ ଆସିଛନ୍ତି, ମୁଁ ବଡ଼ ଖୁସି ହେଲି ।''

ହୋମ୍‌ସ ଉତ୍ତର ଦେଲେ, ''ମିଷ୍ଟର ଲାନର୍, ମୁଁ ଆସି ତୁମ କାମରେ କିଛି ବାଧା ଦେଇନାହିଁ ନିଶ୍ଚୟ । ଯେଉଁ ଘଟଣାରୁ ଏ ପରିଣତି ହେଲା, ତୁମେ ସେ ସବୁ ଶୁଣିଛ ?''

''ହଁ, ମୁଁ ସେକଥା କିଛିଟା ଶୁଣିଛି ।''

''କିଛି ଗୋଟେ ସିଦ୍ଧାନ୍ତ କରିଛ ?''

''ମୁଁ ଯାହା ଦେଖୁଛି, ଭୟରେ ଲୋକଟାର ମୁଣ୍ଡ ବିଗିଡ଼ିଯାଇଛି । ଏଇ ଦେଖନ୍ତୁ ! ରାତିରେ ସେ ଆରାମରେ ଖଟ ଉପରେ ଶୋଇବା ଜଣାଯାଉଛି । ଆପଣ ଜାଣନ୍ତି, ସାଧାରଣତଃ ପାହାନ୍ତା ପାଞ୍ଚଟାବେଳେ ଆତ୍ମହତ୍ୟାର ସମୟ । ଏ ବି ପ୍ରାୟ ସେଇ ସମୟରେ ଦଉଡ଼ି ଲଗାଇ ଦେଇଛନ୍ତି । ଜଣାଯାଉଛି, ଏଥିପାଇଁ ଆଗରୁ ତାଙ୍କ ମନରେ ବହୁତ ଆଲୋଡ଼ନ ହୋଇଛି ।''

ମୁଁ କହିଲି, ''ଦେହର ମାଂସପେଶୀଗୁଡ଼ା ଯେମିତି ଟାଣ ହୋଇଯାଇଛି, ସେଥିରୁ ଜଣାଯାଉଛି ପ୍ରାୟ ତିନିଘଣ୍ଟା ହେଲା ମୃତ୍ୟୁ ହୋଇଛି ।''

ହୋମ୍‌ସ ପଚାରିଲେ, ''ଘର ଭିତରେ କିଛି ଅସ୍ୱାଭାବିକ ଜିନିଷ ଲକ୍ଷ୍ୟ କରିଛ ?''

''ହଁ, ପାଣି ରଖିବା ଜାଗା ଉପରେ କେତେଟା ପେଚ, ଆଉ ଗୋଟେ ପେଚକସ୍ ଥିଲା । ରାତିରେ ସେ ଗୁଡ଼ାଏ ସିଗାରେଟ୍ ଟାଣିଥିବା ପରି ଜଣାଯାଉଛି । ଏଇ ଚାରିଖଣ୍ଡ ସିଗାରେଟ୍‌ର ମୁଣ୍ଡି । ନିଆଁ ପାଖରୁ ମୁଁ ତାକୁ ପାଇଲି ।''

''ହୁଁ, ତାଙ୍କ ସିଗାରେଟ୍ ପାଇପ୍ ପାଇଛନ୍ତି ?''

''ନା, ପାଇପ୍ ଦେଖିନାହିଁ ।''

''ତାଙ୍କ ସିଗାରେଟ୍ ରଖିବା ଡବା ?''

''ହଁ, ସେଟା ତାଙ୍କ ଛାତି ପକେଟ୍‌ରେ ଥିଲା ।''

''ହୋମ୍‌ସ ଡବାଟା ଖୋଲିଲେ । ସେଥିରେ ଖଣ୍ଡେ ମାତ୍ର ସିଗାରେଟ୍ ଥିଲା । ସେ ସେଟାକୁ ଶୁଙ୍ଘିଲେ । ତା ପରେ କହିଲେ, ''ଏ ଖଣ୍ଡ ହାଭାନା ସିଗାରେଟ୍, କିନ୍ତୁ ଅନ୍ୟ ଗୁଡ଼ା ଗୋଟେ ଭିନ୍ନଧରଣର । ଏ ସିଗାରେଟ୍ ହଲାଣ୍ଡ ଲୋକେ ଇଷ୍ଟଇଣ୍ଡିଆ କମ୍ପାନୀରୁ ମଗାନ୍ତି । ସେଗୁଡ଼ା ସାଧାରଣତଃ ପାଳରେ ଗୁଡ଼ା ହୋଇଥାଏ । ଅନ୍ୟ ସିଗାରେଟ୍ ତୁଳନାରେ ସରୁ ।'' ସେ ସିଗାରେଟ୍ ମୁଣ୍ଡି ଚାରିଖଣ୍ଡ ନେଇ ତାଙ୍କ ପକେଟ୍‌ରୁ ଲେନ୍‌ସ ବାହାର କରି ପରୀକ୍ଷା କଲେ । ତା'ପରେ କହିଲେ, ''ଏଥିରୁ ଦି'ଟା ପାଇପ୍‌ରେ ଲଗାଯାଇ ଟଣା ହୋଇଛି,

ଆଉ ଦିଟା ଖାଲି ପାଟିରେ । ଦି'ଟା ଗୋଟେ ଧାରୁଆ ଛୁରୀରେ କଟା ହୋଇଛି, ଆଉ ଦି'ଟା ଟାଣୁଆ ଦାନ୍ତରେ କାମୁଡ଼ି ଛିଣ୍ଡା ହୋଇଛି । ଏଟା ଆତ୍ମହତ୍ୟା ନୁହେଁ ମିଷ୍ଟର ଲାନର୍ । ଏଟା ଏକ ସୁଚିନ୍ତିତ ହତ୍ୟା ।''

''ଅସମ୍ଭବ !'' ଇନିସ୍‌ପେକ୍ଟର କହିଉଠିଲେ ।

''କାହିଁକି ?''

''କେହି ଜଣେ ଲୋକକୁ ଏମିତି ଦଉଡ଼ିରେ ଝୁଲାଇ ମାରିବ କାହିଁକି ?''

''ସେଇଟା ତ ଆମକୁ ଖୋଜି ବାହାର କରିବାକୁ ପଡ଼ିବ ।''

''ହତ୍ୟାକାରୀମାନେ ଘର ଭିତରକୁ ଆସିଲେ କେମିତି ?''

''ସାମନା ପାଖ ଦରଜା ବାଟେ ।''

''କିନ୍ତୁ ସକାଳେ ସେଟା ଭିତରୁ ବନ୍ଦଥିଲା ।''

''ତା'ହେଲେ ସେମାନେ ଯିବାପରେ ସେଟା ବନ୍ଦ କରାଯାଇଛି ।''

''ଆପଣ ଜାଣିଲେ କେମିତି ?''

''ମୁଁ ସେମାନଙ୍କର ଚିହ୍ନ ଦେଖିଛି । ଟିକିଏ ଅପେକ୍ଷାକର । ମୁଁ ଏ ବିଷୟରେ ଆଉ କିଛି ସମ୍ବାଦ ତୁମକୁ ଦେଇପାରିବି ।''

ସେ ଦରଜା ପାଖକୁ ଯାଇ ତାଲାଟାକୁ ଏପଟ ସେପଟ ମୋଡ଼ାମୋଡ଼ି କରି ପରୀକ୍ଷା କଲେ । ଚାବିଟା ତାଲାରେ ଲାଗିଥିଲା । ସେଟା ମଧ୍ୟ ଦେଖିଲେ । ବିଛଣା, ଚଉକି, ଗାଲିଚା, ଆଲ୍‌ମିରା, ମୃତଦେହ, ସବୁ ଗୋଟି ଗୋଟି କରି ପରୀକ୍ଷା କରିଗଲେ । ଶେଷରେ ସେ ସନ୍ତୁଷ୍ଟ ହେଲାପରି ଜଣାଗଲା । ତିନିଜଣଯାକ ମିଶି ଦଉଡ଼ିଟା କାଟିଦେଇ ମୃତଦେହଟାକୁ ଆସ୍ତେ ତଳେ ଥୋଇଦେଇ ଗୋଟେ ଚଦର ଢାଙ୍କିଦେଲୁ । ତା'ପରେ ହୋମ୍‌ସ ପଚାରିଲେ, ''ଏ ଦଉଡ଼ି ଖଣ୍ଡ ଆସିଲା କୁଆଡୁ ?''

ଡାକ୍ତର ଟ୍ରିଭେଲିଆନ୍ ଖଟତଳୁ ଗୋଟେ ମୋଡ଼ା ଦଉଡ଼ି ଟାଣି ଆଣି କହିଲେ, ''ଏଇ ମୋଡ଼ାରୁ ସେଖଣ୍ଡ କଟାହୋଇଛି । ସେ ସବୁବେଳେ ନିଆଁକୁ ଭାରି ଭୟ କରୁଥିଲେ । ସେଥିପାଇଁ କେତେବେଳେ ଘରେ କେଉଁଠି ନିଆଁ ଲାଗିଗଲେ ଝରକାବାଟେ ପଳେଇଯିବାପାଇଁ ଏ ଦଉଡ଼ି ମୋଡ଼ାଟା ସେ ବରାବର ପାଖେ ପାଖେ ରଖିଥିଲେ ।''

ଟିକିଏ ଚିନ୍ତା କରି ହୋମ୍‌ସ କହିଲେ, ''ତା' ହେଲେ ସେମାନଙ୍କର ଅନେକଟା ସୁବିଧା ହୋଇଥିବ । ହଁ ପ୍ରକୃତ ଘଟଣାଟା ଖୁବ୍ ସହଜ ଆଉ ସରଳ । ଆଜି ସନ୍ଧ୍ୟା ପୂର୍ବରୁ ମୁଁ ତୁମକୁ ସବୁ କଥା କହିଦେଇପାରିବି । ମୁଁ ବ୍ଲେସିଙ୍ଗଟନ୍‌ଙ୍କର ଏଇ ଫଟୋଟା ନେଇଯାଉଛି । ମୋ ଅନୁସନ୍ଧାନରେ ଏଟା କାମରେ ଆସିବ ।''

ଡାକ୍ତର କହିଉଠିଲେ, ''କିନ୍ତୁ ଆପଣ ତ ଆମକୁ କିଛି ହେଲେ କହିନାହାନ୍ତି ।''

ହୋମ୍‌ସ ଉତ୍ତରଦେଲେ, ''ଘଟଣାବଳୀର କ୍ରମରେ କିଛି ସନ୍ଦେହ ରହିନପାରେ । ଏ ଘଟଣାରେ ତିନିଜଣ ସଂପୃକ୍ତ । ସେ ଯୁବକ, ସେ ବୁଢ଼ା ରୋଗୀ ଏବଂ ଆଉ ଜଣେ ତୃତୀୟଲୋକ । ତାର ପରିଚୟ ବିଷୟରେ ମୁଁ ଏ ପର୍ଯ୍ୟନ୍ତ କିଛି ସୂତ୍ର ପାଇନାହିଁ । ପ୍ରଥମ ଦି'ଜଣ ହେଲେ ସେ ରୁଷ୍ ଭଦ୍ରଲୋକ ଆଉ ତାଙ୍କ ପୁଅ । ତେଣୁ ଆମେ ତାଙ୍କୁ ଚିହ୍ନିବାରେ କୌଣସି ଅସୁବିଧା ନାହିଁ । ତାଙ୍କର କେହି ଜଣେ ସାଥୀ ତାଙ୍କୁ ଘର ଭିତରକୁ ଆସିବାପାଇଁ ସୁବିଧା କରିଦେଇଛି । ମୋର ଉପଦେଶ ଇନିସ୍‌ପେକ୍ଟର, ତୁମେ ଚାକରଟୋକାକୁ ଆରେଷ୍ଟ କର । ସେ ବୋଧହୁଏ ଖୁବ୍ ଅଳ୍ପଦିନ ହେଲା ଆପଣଙ୍କ ପାଖେ ରହିଛି ଡାକ୍ତର ?''

ଡାକ୍ତର କହିଲେ, ''ପୂଜାରୀ ଆଉ ଚାକରାଣୀ ଖୋଜି ଖୋଜି ସେ ସଇତାନ୍ ଟୋକାଟାକୁ ପାଉନାହାନ୍ତି । ସେ କୁଆଡ଼େ ପଳେଇଛି ।''

ଟିକିଏ ଦୁଃଖିତ ହୋଇ ହୋମ୍‌ସ କହିଲେ, ''ଏ ନାଟକରେ ତା'ର ଭୂମିକା କିଛି ସାମାନ୍ୟ ନୁହେଁ । ତିନିଜଣଯାକ ପାଦ ଚିପି ଚିପି ଶିଡ଼ି ଉପରେ ଉଠିଛନ୍ତି । ପ୍ରଥମେ ସେ ବୁଢ଼ାଲୋକ, ତା'ପରେ ସେ ଯୁବକ ଆଉ ଏ ଅଜଣା ଲୋକ ସବା ପଛରେ । ପାଦଚିହ୍ନରୁ ଏଟା ପରିଷ୍କାର ଜଣାଯାଉଛି । କାଲି ରାତିରେ କେଉଁଟା କାହାର ପାଦଚିହ୍ନ ମୁଁ ଜାଣିପାରିଛି । ତା'ପରେ ସେମାନେ ବ୍ଲେସିଙ୍ଗଟନ୍‌ଙ୍କ ରୁମ୍ ପାଖକୁ ଯାଇଛନ୍ତି । ଦେଖିଛନ୍ତି କବାଟ ଭିତରୁ ବନ୍ଦ ଅଛି । ଖଣ୍ଡେ ମୋଟା ତାର ସାହାଯ୍ୟରେ ସେମାନେ ତାଲାଟା କୌଣସି ପ୍ରକାରେ ଖୋଲିଛନ୍ତି । ଘର ଭିତରେ ପଶିଲାପରେ ସେମାନେ ପ୍ରଥମେ ନିଶ୍ଚୟ ବ୍ଲେସିଙ୍ଗଟନ୍‌ଙ୍କୁ କାବୁ କରିଦେଇଥିବେ । ବ୍ଲେସିଙ୍ଗଟନ୍ ସେତେବେଳେ ହୁଏତ ନିଦରେ ଶୋଇଥିଲେ କିମ୍ବା ଏମାନଙ୍କୁ ଦେଖି ଭୟରେ କାଠ ପାଲଟି ଯାଇଛନ୍ତି ।

ତେଣୁ ସେ କିଛି ପାଟି କରିପାରି ନାହାନ୍ତି । ପାଟି କରିଥିଲେ ବି କାହାରିକୁ ଶୁଭି ନଥିବ - କାରଣ ଏ ଘରର କାନ୍ଥଗୁଡ଼ା ଖୁବ୍ ମୋଟା ।

''ବ୍ଲେସିଙ୍ଗଟନ୍ଙ୍କୁ କାବୁ କଲାପରେ ତାଙ୍କ ଭିତରେ କିଛି ଆଲୋଚନା ଚାଲିଛି । ବୋଧହୁଏ କ'ଣ କରିବେ ତାର ବିଚାର କରୁଥିଲେ । ସେଥିପାଇଁ କିଛି ସମୟ ଲାଗିଛି । ସେତିକିବେଳେ ସେମାନେ ଏ ସିଗାରେଟ୍ ଟାଣିଛନ୍ତି । ବୁଢ଼ାଜଣକ ସେଇ ବେତଚଉକିଟା ଉପରେ ବସିଥିଲା । ସେ ପାଇପ୍‌ରେ ସିଗାରେଟ୍ ଟାଣିଛି । ଯୁବକ ଜଣକ ସେଇ ଅନ୍ୟ ଚୌକିରେ ବସିଥିଲା । ତା' ସିଗାରେଟର ପାଉଁଶ ସେ ଆଲମିରା ଡ୍ରୟର ଉପରେ ଝାଡ଼ିଛି । ତୃତୀୟ ଲୋକଟା ଘର ଭିତରେ ଏପଟ ସେପଟ ହୋଇଛି । ଯେତେଦୂର ଅନୁମାନ ବ୍ଲେସିଙ୍ଗଟନ୍ ଖଟ ଉପରେ ବସି ରହିଛନ୍ତି । ମୁଁ ଅବଶ୍ୟ ସେ ବିଷୟରେ ନିଶ୍ଚିତ ନୁହେଁ ।''

''ଶେଷରେ ସେମାନେ ବ୍ଲେସିଙ୍ଗଟନ୍ଙ୍କୁ ନେଇ ଦଉଡ଼ିରେ ବାନ୍ଧି ଝୁଲାଇ ଦେଇଛନ୍ତି । ଯୋଜନାଟା ସେମାନେ ଆଗରୁ ଠିକ୍ କରିଥିଲେ । ମୋର ଅନୁମାନ ସେମାନେ ତାଙ୍କୁ ଝୁଲାଇବା ପାଇଁ ଫାଶୀଖୁଣ୍ଟ କାମ କରିବା ପାଇଁ ଗୋଟେ ପୁଲି ବା ସେମିତି କିଛି ଜିନିଷ ସାଥିରେ ଆଣିଛନ୍ତି । ସେଟାକୁ ଛାତରେ ଲଗାଇବା ପାଇଁ ସେ ପେଚ ଆଉ ପେଚ୍‌କସ୍ ଆଣିଥିଲେ । କିନ୍ତୁ ଏ ହୁକ୍‌ଟା ଯୋଗୁଁ ସେମାନେ ସେ ଅସୁବିଧାରେ ପଡ଼ିନାହାନ୍ତି । ସେମାନେ ତାଙ୍କ କାମସାରି ଚାଲିଯାଇଛନ୍ତି । ତାଙ୍କ ସହଯୋଗୀ ସାମନା ଦରଜାଟା ଭିତରୁ ବନ୍ଦ କରିଦେଇଛି ।''

ଘଟଣାଟାର ଏ ବିବରଣୀ ଆମେ ମନ ଦେଇ ଶୁଣିଲୁ । ହୋମ୍‌ସ ବିଭିନ୍ନ ସଂକେତରୁ ଏ ଯେଉଁ ଅନୁଶୀଳନ କଲେ ଏବଂ ଆମ ଆଗରେ କହିଲେ, ଆମେ କିଛି ବୁଝିପାରିଲୁ ନାହିଁ । ଚାକରଟୋକା ବିଷୟରେ ଅନୁସନ୍ଧାନ କରିବା ପାଇଁ ଇନିସ୍‌ପେକ୍ଟର ଶୀଘ୍ର ସେଠୁ ବାହାରିଗଲେ । ହୋମ୍‌ସ ଆଉ ମୁଁ ବେକରଷ୍ଟ୍ରୀଟ୍‌କୁ ଫେରିଆସିଲୁ । ଖିଆପିଆ ସରିଲାପରେ ସେ କହିଲେ, ''ମୁଁ ତିନିଟାବେଳକୁ ଫେରିବି । ଡାକ୍ତର ଆଉ ଇନିସ୍‌ପେକ୍ଟର ସେତିକିବେଳକୁ ଏଠିକି ଆସିବେ । ମୋର ଆଶା ସେତେବେଳକୁ ଏ କେଶ୍‌ର ଆଉ ଯାହା କିଛି ବାକି ଅଛି, ସେତକ ମୁଁ ଜାଣିପାରିବି ।''

ଠିକ୍ ସମୟରେ ଡାକ୍ତର ଆଉ ଇନିସ୍‌ପେକ୍ଟର ଆସି ପହଞ୍ଚିଲେ, କିନ୍ତୁ ହୋମ୍‌ସ ଫେରିଲାବେଳକୁ ଚାରିଟା ବାଜିବାକୁ ପନ୍ଦର ମିନିଟ୍ ବାକି । ତାଙ୍କ ଚେହେରା ଭାବଭଙ୍ଗୀରୁ ମୁଁ ଜାଣିଲି ଯେ ସବୁ ଠିକ୍ ଅଛି । ସେ ପଚାରିଲେ, ''ଆଉ କିଛି ଖବର ଅଛି ଇନିସ୍‌ପେକ୍ଟର ?''

''ଆମେ ସେ ଚାକରଟୋକାକୁ ଧରିଛୁ ।''

''ଚମତ୍କାର ! ଆଉ ମୁଁ ସେ ଅନ୍ୟ ଦି'ଟା ଲୋକଙ୍କୁ ପାଇଛି ।''

''ଆମେ ସମସ୍ତେ କହିଉଠିଲୁ, ତାଙ୍କୁ ଧରିଛନ୍ତି ?''

''ନ ଧରିଲେ ବି ମୁଁ ସେମାନଙ୍କ ପରିଚୟ ଜାଣିପାରିଛି । ଏଇ ଯେ ବ୍ଲେସିଙ୍ଗଟନ୍ ଆଉ ତାଙ୍କ ହତ୍ୟାକାରୀ, ସେମାନେ ସ୍କଟଲାଣ୍ଡଇୟାର୍ଡ୍‌ରେ ବେଶ୍ ଜଣାଶୁଣା । ମୁଁ ବି ସେଇଆ ଆଶା କରିଥିଲି । ତାଙ୍କ ନାଁ ହେଲା ବିଡଲ, ହେୱାର୍ଡ ଆଉ ମୋଫଟ୍ ।''

ଇନିସ୍‌ପେକ୍ଟର କହିଉଠିଲେ, ''ବ୍ୟାଙ୍କ ଡକାୟତ ଦଳ ?''

''ହଁ, ଆପାତତଃ ସେଇଆ ।''

''ତା'ହେଲେ ତ ବ୍ଲେସିଙ୍ଗଟନ୍ ନିଶ୍ଚୟ ସଟ୍ଟନ ହୋଇଥିବେ ?''

''ହଁ ଠିକ୍ ସେଇଆ ।''

''ତେବେ ତ ସବୁ କଥା ସ୍ଫଟିକପରି ପରିଷ୍କାର ହୋଇଗଲା ।''

ଡାକ୍ତର ଟ୍ରିଭେଲିଆନ୍ ଆଉ ମୁଁ ବୋକାଙ୍କ ପରି ପରସ୍ପରକୁ ଚାହିଁ ରହିଲୁ । ହୋମ୍‌ସ କହିଲେ, ''ୱର୍ଥିଙ୍ଗଟନ୍ ବ୍ୟାଙ୍କର ସେ ଡକାୟତି କଥା ତୁମର ମନେଥିବ । ସେଥିରେ ପାଞ୍ଚଜଣ ଲୋକ ସଂପୃକ୍ତ ଥିଲେ । ଏ ଚାରିଜଣ, ଆଉ ଜଣେ ହେଲା କାର୍ଟ୍ରାଇଟ୍ । ବ୍ୟାଙ୍କ ଜଗୁଆଳି ଟବିନକୁ ହତ୍ୟା କରାଯାଇଥିଲା, ଆଉ ଡକାୟତମାନେ ସାତହଜାର ପାଉଣ୍ଡ ନେଇ ପଳାଇଯାଇଥିଲେ । ଏଟା ହେଲା ୧୮୭୫ ମସିହାର ଘଟଣା । ପାଞ୍ଚଜଣଯାକ ଆରେଷ୍ଟ ହେଲେ । କିନ୍ତୁ ତାଙ୍କ ବିରୁଦ୍ଧରେ ଯଥେଷ୍ଟ ପ୍ରମାଣ ମିଳିପାରିଲା ନାହିଁ । ଏଇ ବ୍ଲେସିଙ୍ଗଟନ୍ ବା ସଟନ ଦଳ ଭିତରେ ସବୁଠାରୁ ବଦମାସ । ତାରି ସାକ୍ଷ୍ୟ ଅନୁସାରେ କାର୍ଟ୍ରାଇଟ୍ ଫାଶୀ ପାଇଲା । ଅନ୍ୟ ତିନିଜଣଙ୍କୁ ପନ୍ଦରବର୍ଷ ଲେଖାଏଁ ଜେଲଦଣ୍ଡ ହେଲା, କିନ୍ତୁ ସେମାନେ ପୂରା ଜେଲଦଣ୍ଡ ଭୋଗକରିବା ଆଗରୁ ସେମାନଙ୍କୁ ଛାଡ଼ି

ଦିଆଗଲା । ସେମାନେ ଖଲାସ ହେବାପରେ ବିଶ୍ୱାସଘାତକ ସଟନକୁ ଖୋଜିବୁଲିଲେ, ତାଙ୍କ ସାଙ୍ଗ କାର୍ଟରାଇଟ୍‌ର ମୃତ୍ୟୁର ପ୍ରତିଶୋଧ ନେବା ଉଦ୍ଦେଶ୍ୟରେ । ଦି'ଥର ତାକୁ ଧରିବାକୁ ସେମାନେ ଚେଷ୍ଟା କଲେ, କିନ୍ତୁ ସଫଳ ହୋଇପାରିଲେ ନାହିଁ, କିନ୍ତୁ ତୃତୀୟଥର ସଫଳ ହେଲେ । ଆଉ କିଛି ବୁଝିବାକୁ ବାକି ରହିଲା ଡାକ୍ତର ଟ୍ରିଭେଲିଆନ୍ ?''

''ଆପଣ ସବୁକଥା ବେଶ୍ ପରିଷ୍କାର କରିଦେଇଛନ୍ତି । ଯେଉଁଦିନ ବ୍ଲେସିଙ୍ଗଟନ୍ ଏତେ ବିଚଳିତ ହୋଇପଡ଼ିଲେ, ସେ ଖବରକାଗଜରୁ ଏମାନଙ୍କ ଖଲାସହେବା କଥା ଜାଣିପାରିଲେ, ଏଥିରେ ସନ୍ଦେହ ନାହିଁ ।''

''ତା' ବିଲକୁଲ୍ ଠିକ୍ । ଡକାୟତି କଥା କହିବାଟା ଖାଲି ବାହାନା ।''

''କିନ୍ତୁ ଆପଣଙ୍କୁ ଏ କଥା କହିଲେ ନାହିଁ କାହିଁକି ?''

''ଦେଖନ୍ତୁ ସେ ତାଙ୍କ ସାଙ୍ଗମାନଙ୍କ ଚରିତ୍ର ଜାଣନ୍ତି । ତେଣୁ ଯେତେଦୂର ସମ୍ଭବ ନିଜକୁ ଲୁଚାଇ ରଖିବାକୁ ଚେଷ୍ଟା କରୁଥିଲେ । ତେଣୁ ସମସ୍ତଙ୍କ ପାଖେ ସେ ନିଜ ପରିଚୟ ଗୋପନ ରଖୁଥିଲେ । ତାଙ୍କ ଗୁପ୍ତକଥା ଅତି ଜଘନ୍ୟ । ତେଣୁ ସେ ସେଟା ପ୍ରକାଶ କରୁନଥିଲେ । ଯେତେ ଜଘନ୍ୟ ହେଲେ ବି ସେ ଇଂରେଜ ଆଇନ୍‌ର ଆଶ୍ରୟରେ ରହିଯାଇଥିଲେ । ଯଦିଓ ସେ ଆଇନ୍ ତାଙ୍କୁ ରକ୍ଷା କରିପାରିଲା ନାହିଁ, ତଥାପି ନ୍ୟାୟ ତା'ର ନିଜ କାମ କରିବ ।''

ଏଇ ହେଲା ଡାକ୍ତର ଘରେ ରୋଗୀର ଘଟଣା । ସେଇ ରାତିରୁ ହତ୍ୟାକାରୀମାନଙ୍କର ପତ୍ତା ମିଳିଲା ନାହିଁ । ସ୍କଟ୍‌ଲାଣ୍ଡ ୟାର୍ଡ଼ରେ ପୋଲିସ୍‌ର ବିଶ୍ୱାସ ଯେ ପର୍ତ୍ତୁଗାଲ ଉପକୂଳରେ ନୋରାକ୍ରିନା ବୋଲି ଯେଉଁ ଜାହାଜ ବୁଡ଼ିଗଲା, ଆଉ ସେଥିରେ ଥିବା ସବୁ ଯାତ୍ରୀ ବୁଡ଼ିମଲେ, ସେଇଥିରେ ଏ ହତ୍ୟାକାରୀମାନେ ଥିଲେ । ଚାକରଟୋକା ବିରୁଦ୍ଧରେ କିଛି ପ୍ରମାଣ ମିଳିଲା ନାହିଁ । ତା'ପରେ ବ୍ରୁକ୍‌ଷ୍ଟ୍ରୀଟ୍‌ର ଏ ରହସ୍ୟ ଆଉ କେହି ଜାଣିପାରିଲେ ନାହିଁ ।



# ନୌବାହିନୀ ସନ୍ଧିପତ୍ର

ମୋ ବିବାହ ପରେ ଜୁଲାଇ ମାସଟା ଖୁବ୍ ଉଲ୍ଲେଖଯୋଗ୍ୟ, କାରଣ ସେଇ ମାସରେ ତିନିଟା କେଶ୍‌ରେ ସେର୍‌ଲକ୍ ହୋମ୍‌ସଙ୍କ ସାଥିରେ ରହି ରହି ତାଙ୍କ କାର୍ଯ୍ୟପଦ୍ଧତି ଅନୁଧ୍ୟାନ କରିବାର ସୁଯୋଗ ମୋତେ ମିଳିଥିଲା । ମୋ ନୋଟ୍ ଖାତାରେ ସେସବୁ କେଶ୍ କଥା ମୁଁ ଟିପି ରଖିଛି । ତା' ଭିତରୁ ଦି'ଟା କେଶ୍‌ରେ ଇଂଲଣ୍ଡର ଅନେକ ସଂଭ୍ରାନ୍ତ ପରିବାର ଜଡ଼ିତ । ତେଣୁ ଆହୁରି ଅନେକ ବର୍ଷଯାଏ ତାକୁ ପ୍ରକାଶ କରିବା ଅସମ୍ଭବ । ସେ ବିଷୟ ପ୍ରକାଶ ପାଇଲାବେଳକୁ ହୁଏତ ଦୁନିଆ ବଦଳିଯାଇଥିବ । ଏବେ ମୁଁ ଯେଉଁ ତୃତୀୟ କେଶ୍‌ର କଥା କହିବାକୁ ଯାଉଛି, ସେଟା ସେତେବେଳେ ଜାତୀୟ ସ୍ୱାର୍ଥ ଦୃଷ୍ଟିରୁ ଖୁବ୍ ଗୁରୁତ୍ୱପୂର୍ଣ୍ଣ ଥିଲା । କେଶ୍‌ଟା ବି ଅସାଧାରଣ ।

ମୁଁ ସ୍କୁଲରେ ପଢ଼ିଲାବେଳେ ପର୍‌ସି ଫେଲପ୍‌ସ ନାଁରେ ଜଣେ ପିଲା ସହିତ ମୋର ଘନିଷ୍ଠ ବନ୍ଧୁତା ଥିଲା । ସେ ମୋରି ବୟସର; କିନ୍ତୁ ମୋର ଦି'ଶ୍ରେଣୀ ଉପରେ ପଢୁଥିଲା । ସେ ଖୁବ୍ ଭଲ ଛାତ୍ର ଥିଲା । ଆଉ ସ୍କୁଲର ଅଧିକାଂଶ ପୁରସ୍କାର ପାଉଥିଲା । ଶେଷରେ ବୃତ୍ତିପାଇ କେମ୍ବ୍ରିଜରେ ପଢ଼ିଲା । ଆମେ ସ୍କୁଲରେ ପଢ଼ିବାବେଳେ ଜାଣିଥିଲୁ ଯେ କନ୍‌ଜର୍‌ଭେଟିଭ୍ ଦଳର ବିଖ୍ୟାତ ନେତା ଲର୍ଡ଼ ହୋଲ୍‌ଡ ହର୍‌ଷ୍ଟ ତା ମାମୁ । ବଡ଼ଲୋକର ଭଣଜା ବୋଲି ସ୍କୁଲରେ ତା'ର କିଛି ଲାଭ ହେଲାନାହିଁ, ବରଂ ଖେଳପଡ଼ିଆରେ ଆମେ ତାକୁ ନାନା ପ୍ରକାରେ ଚିଡ଼ାଉ । ବେଳେବେଳେ ଉଇକେଟ୍‌ରେ ତାକୁ ପିଟୁ; କିନ୍ତୁ ଭବିଷ୍ୟତରେ ପଢ଼ିସାରିଲା ପରେ ସେ ତା'ର ଲାଭପାଇଲା । ମୁଁ ଶୁଣିବାକୁ ପାଇଲି, ତା' ନିଜର ଦକ୍ଷତା ଆଉ ତା' ମାମୁଙ୍କ ପ୍ରଭାବ ଯୋଗୁଁ ସେ ଦେଶର ବୈଦେଶିକ ଅଫିସ୍‌ରେ ନିଯୁକ୍ତି ପାଇଲା । ତା' ପରେ ମୁଁ ତା' କଥା ପୂରା ଭୁଲିଗଲି । ଶେଷରେ ଦିନେ ଏ ଚିଠିଟା ଆସି ମୋ ପାଖେ ପହଞ୍ଚିଲା -

ବ୍ରିୟରବେୟାର ଓକିଙ୍ଗ୍

''ପ୍ରିୟ ୱାଟ୍‌ସନ୍ - ତୁମେ ନିଶ୍ଚୟ ଟାଡ୍‌ପୋଲ୍ ଫେଲପ୍‌ସକୁ ମନେ ରଖିଥିବ । ତୁମେ ତୃତୀୟ ଶ୍ରେଣୀରେ ପଢ଼ିଲାବେଳେ ମୁଁ ପଞ୍ଚମରେ ପଢୁଥିଲି ।

ଆଉ ମଧ୍ୟ ଶୁଣିଥିବ ଯେ ମୋ ମାମୁଙ୍କ ଯୋଗୁଁ ମୁଁ ବୈଦେଶିକ ବ୍ୟାପାର ଅଫିସ୍‌ରେ ଖଣ୍ଡେ ଭଲ ଚାକିରି ପାଇପାରିଛି । ସେଠି ମୋତେ ସମସ୍ତେ ଖୁବ୍ ବିଶ୍ୱାସ କରନ୍ତି, ଆଉ ମୋର ଯଥେଷ୍ଟ ସମ୍ମାନ ବି ଅଛି; କିନ୍ତୁ ଏବେ ହଠାତ୍ ଗୋଟେ ଦୁର୍ଭାଗ୍ୟ ଆସି ପହଞ୍ଚି ମୋ ଜୀବନକୁ ପୂରାପୂରି ନଷ୍ଟ କରିଦେଇଛି ।

''ସେ ଭୀଷଣ ଦୁର୍ଭାଗ୍ୟର ଟିକିନିଖି ବିବରଣୀ ଲେଖିବା ଦର୍କାର ନାହିଁ । ଯଦି ତୁମେ ଦୟାକରି ତୁମ ବନ୍ଧୁ ସେର୍‌ଲକ୍ ହୋମ୍‌ସଙ୍କୁ ସାଥିରେ ଧରି ଆସିପାରିବ, ତା'ହେଲେ ସବୁ କଥା ତୁମ ଆଗେ କହିବି । ନଅ ସପ୍ତାହ ହେଲା ବିଛଣାରେ ପଡ଼ି ପଡ଼ି ମୁଁ ଏବେ ସାମାନ୍ୟ ଟିକିଏ ସୁସ୍ଥ ହୋଇଛି । ଖୁବ୍ ଦୁର୍ବଳ ହୋଇଯାଇଛି । ତୁମ ବନ୍ଧୁ ଦୟାକରି ଆସିଲେ ବଡ଼ ଉପକୃତ ହେବି । ଏ କେଶ୍‌ରେ ତାଙ୍କର ଉପଦେଶ ମୋର ଦର୍କାର । ସରକାରୀ ପୋଲିସ୍ କହୁଛନ୍ତି ଯେ ଏ ବିଷୟରେ ଆଉ କିଛି କରାଯାଇପାରିବ ନାହିଁ । ଦୟାକରି ତାଙ୍କୁ ଧରି ଶୀଘ୍ର ଆସିବ । ପ୍ରତି ମିନିଟ୍ ମୋତେ ଗୋଟେ ଘଣ୍ଟାପରି ଲାଗୁଛି । ଏ ବିପଦ ପଡ଼ିଲା ଦିନୁ ମୋ ମୁଣ୍ଡ ଠିକ୍ ନଥିଲା । ତେଣୁ ମୁଁ ଆଗରୁ ତାଙ୍କୁ ଅନୁରୋଧ କରିପାରିନଥିଲି । ତାଙ୍କୁ ଏ କଥା କହିବ । ଏବେ ମୋ ଅବସ୍ଥା ଟିକିଏ ଭଲ ଅଛି; କିନ୍ତୁ ପୁଣି କେତେବେଳେ କ'ଣ ହୋଇଯାଇପାରେ । ମୁଁ ଏତେ ଦୁର୍ବଳ ଯେ ନିଜେ ଚିଠିଟା ଲେଖିପାରୁନାହିଁ । ଅନ୍ୟ ହାତରେ ଲେଖାଉଛି, ନିଶ୍ଚୟ ତାଙ୍କୁ ଧରି ଆସିବ ।

ତୁମର ପୁରୁଣା ସ୍କୁଲ ସାଥୀ
ପର୍‌ସି ଫେଲପ୍‌ସ

ଚିଠିଟା ପଢ଼ି ମୋତେ ବଡ଼ ବିକଳ ଲାଗିଲା । ହୋମ୍‌ସଙ୍କୁ ସାଥିରେ ନେବାପାଇଁ ସେ ବାରମ୍ବାର ଅନୁରୋଧ କରିଛି । ମନରେ ଦୟା ଆସିଲା । କାମଟା ଯେତେ କଠିନ ହୋଇଥିଲେ ବି ମୁଁ ନିଶ୍ଚୟ ଚେଷ୍ଟା କରିଥାନ୍ତି; କିନ୍ତୁ ମୁଁ ଜାଣେ ହୋମ୍‌ସ ତାଙ୍କ କଳାକୁ ଭଲପାଆନ୍ତି । ତେଣୁ ସେ ଏପରି ପରିସ୍ଥିତିରେ ନିଶ୍ଚୟ ସାହାଯ୍ୟ କରିବେ । ମୋ ସ୍ତ୍ରୀ ମଧ୍ୟ କହିଲେ ଯେ ଘଟଣାଟା ହୋମ୍‌ସଙ୍କୁ ଜଣାଇବାରେ ଆଉ ମୁହୂର୍ତ୍ତେବି ଡେରି କରିବା କଥା ନୁହେଁ । ତେଣୁ ଜଳଖିଆ ଖାଇବାର ଘଣ୍ଟାଏ ପରେ ମୁଁ ବେକର୍ ଷ୍ଟ୍ରୀଟ୍‌ରେ ମୋ ପୁରୁଣା ଘରେ ପହଞ୍ଚିଲି ।

ହୋମ୍‌ସ ଘରର ଗୋଟେ କଣରେ ବସି କ'ଣ ଗୋଟେ ରାସାୟନିକ ପରୀକ୍ଷାରେ ଲାଗିଥାନ୍ତି । ମୁଁ ଘର ଭିତରେ ପଶିଲାବେଳେ ହୋମ୍‌ସ ମୋ ଆଡ଼େ

ଚାହିଁଲେ ନାହିଁ । ଜାଣିଲି ସେ ଗୋଟେ କିଛି ଗୁରୁତର ପରୀକ୍ଷାରେ ଲାଗିଛନ୍ତି । ତେଣୁ ଗୋଟେ ଚଉକିରେ ବସି ଅପେକ୍ଷା କଲି । ସେ ଏ ବୋତଲ ସେ ବୋତଲରେ ହାତ ବୁଡ଼ାଉଥାନ୍ତି । ଗୋଟେ କାଚ ପିପେଟ୍‌ରେ ଏଥିରୁ କେତେ ଟୋପା, ସେଥିରୁ କେତେ ଟୋପା ବାହାର କରି ଆଣୁଥାନ୍ତି । ଶେଷରେ ଗୋଟେ ଟେଷ୍ଟଟ୍ୟୁବ୍‌ରେ କିଛି ତରଳ ପଦାର୍ଥ ଆଣି ଟେବୁଲ୍ ଉପରେ ରଖିଲେ । ଡାହାଣ ହାତରେ ଖଣ୍ଡେ ଲିଟ୍‌ମସ୍ କାଗଜ ଧରିଥାନ୍ତି । ଟିକିଏ ପରେ କହିଲେ, ''ତୁମେ ଗୋଟେ ଘଡ଼ିସନ୍ଧିବେଳେ ଆସିଛ ୱାଟ୍‌ସନ୍ ! ଯଦି ଏ କାଗଜ ଖଣ୍ଡ ନୀଳବର୍ଣ୍ଣ ରହେ, ତେବେ ସବୁ ଭଲ- ଯଦି ନାଲି ହୋଇଯାଏ, ତେବେ ଜଣେ ଲୋକର ଜୀବନମରଣ ସମସ୍ୟା ।'' ସେ କାଗଜଖଣ୍ଡ ଟେଷ୍ଟଟିଉବ୍ ଭିତରେ ବୁଡ଼ାଇଦେଲେ । ସାଙ୍ଗେ ସାଙ୍ଗେ କାଗଜଖଣ୍ଡ ଈଷତ୍ ମଇଳା ଲାଲ ରଙ୍ଗ ହୋଇଗଲା । ସେ କହିଉଠିଲେ, ''ହୁଁ, ମୁଁ ବି ସେଇଆ ଭାବୁଥିଲି । ଟିକିଏ ଅପେକ୍ଷା କର ୱାଟ୍‌ସନ୍ ।'' ଟେବଲ୍ ପାଖକୁ ଯାଇ ସେ କେତେଟା ଟେଲିଗ୍ରାମ୍ ଲେଖି ପକାଇଲେ । ସେଗୁଡ଼ା ଚାକର ଟୋକାକୁ ଦେଇଦେଲେ । ତା'ପରେ ମୋ ସାମନାରେ ଚଉକିରେ ବସିପଡ଼ିଲେ ।

କହିଲେ, ''ଏଇଟା ଗୋଟେ ସାଧାରଣ ହତ୍ୟାକାଣ୍ଡ । ମୁଁ ଭାବୁଛି ତୁମେ କିଛି ଗୁରୁତ୍ୱପୂର୍ଣ୍ଣ ବିଷୟ ନେଇ ଆସିଛ । ଘଟଣା କ'ଣ ?''

ମୁଁ ଚିଠି ଖଣ୍ଡ ତାଙ୍କ ହାତକୁ ବଢ଼ାଇଦେଲି । ସେ ମନଦେଇ ସେଟା ପଢ଼ିଲେ । ଚିଠିଟା ମୋତେ ଫେରାଇ ଦେଉ ଦେଉ କହିଲେ ''ଏଥିରେ ତ ବିଶେଷ କିଛି ଲେଖାହୋଇନାହିଁ ।''

''ପ୍ରାୟ କିଛି ନାହିଁ ।''

''ତଥାପି ଲୋକଟା ଖୁବ୍ କୌତୂହଳପ୍ରଦ ।''

''କିନ୍ତୁ ହସ୍ତାକ୍ଷରଟା ତାଙ୍କ ନିଜର ନୁହେଁ ।''

''ଅବଶ୍ୟ -ଏଟା ଜଣେ ନାରୀର ହସ୍ତାକ୍ଷର ।''

''ନା, ଜଣେ ପୁରୁଷର ହାତଲେଖା ନିଶ୍ଚୟ ।'' ମୁଁ କହି ଉଠିଲି ।

''ନା, ଜଣେ ନାରୀର । ତାର ଚରିତ୍ର ମଧ୍ୟ ଅସାଧାରଣ । ଦେଖ ! ଅନୁସନ୍ଧାନ ଆରମ୍ଭରୁ ଜାଣିବା କଥା ଯେ ତୁମ ବନ୍ଧୁଙ୍କର ଜଣେ ନାରୀ ସହିତ ଘନିଷ୍ଠ ସମ୍ବନ୍ଧ ଅଛି । ଆଉ ଭଲହେଉ ବା ମନ୍ଦହେଉ ସେ ନାରୀର ଚରିତ୍ର

ଅସାଧାରଣ । ଏ କେଶ୍‌ଟାରେ ମୋର ବଡ଼ ଆଗ୍ରହ ଆସିଛି । ତୁମେ ଯଦି ପ୍ରସ୍ତୁତ ହୋଇ ଆସିଛ, ତେବେ ଆମେ ଏଇ ସାଙ୍ଗେ ସାଙ୍ଗେ ଓକିଙ୍ଗ୍ ବାହାରିବା, ଆଉ ଏଇ ଭଦ୍ରଲୋକ ଏବଂ ଯେଉଁ ନାରୀ ତାଙ୍କ ପାଇଁ ଏ ଚିଠି ଲେଖିଛି, ତାଙ୍କୁ ଦେଖିବା ।''

ଘଣ୍ଟାକରୁ କମ୍ ସମୟରେ ଆମେ ଓକିଙ୍ଗରେ ପହଞ୍ଚିଗଲୁ । ବ୍ରିଅରବେୟାର ଗୋଟେ ଖୁବ୍ ବଡ଼ ଘର । ଅନ୍ୟାନ୍ୟ ଘରମାନଙ୍କଠାରୁ ଅଲଗା । ଷ୍ଟେସନ୍‌ରୁ ସେଠିକି ଚାଲିଯିବାକୁ ଅଳ୍ପ କେତେ ମିନିଟ୍ ଲାଗିଲା । ଚାକର ହାତରେ ଆମ ନାଁ ଲେଖା କାର୍ଡ଼ ପଠାଇଦେଲୁ । ଟିକିଏ ପରେ ଆମେ ଏକ ସୁନ୍ଦର ଡ୍ରଇଁରୁମ୍‌କୁ ଗଲୁ । ମିନିଟିଏ ପରେ ଜଣେ ହୃଷ୍ଟପୁଷ୍ଟ ଭଦ୍ରଲୋକ ଆସି ଆମକୁ ଅଭିନନ୍ଦନ ଜଣାଇଲେ । ତାଙ୍କ ବୟସ ତିରିଶରୁ ଚାଳିଶ ଭିତରେ; କିନ୍ତୁ ତାଙ୍କ ମୁହଁ, ଆଖିରୁ ସେ ଜଣେ ତରୁଣ ପରି ଜଣାଯାଉଥିଲେ । ଆମ ସାଥିରେ ହ୍ୟାଣ୍ଡସେକ୍ କରି ସେ କହିଲେ, ''ଯାହାହେଉ, ମୁଁ ବଡ଼ ଖୁସି ଯେ ଆପଣମାନେ ଆସିଯାଇଛନ୍ତି । ପର୍‌ସି ସକାଳେ ଆପଣମାନଙ୍କ କଥା ପଚାରୁଥିଲେ । ହତଭାଗା ବିଚରା ! ବୁଡ଼ିଗଲା ମଣିଷ କୁଟାଖିଅକୁ ଆଶ୍ରା କଲାପରି ସେ ହେଉଛନ୍ତି । ତାଙ୍କ ବାପା, ମାଆ ମୋତେ ଆପଣଙ୍କ ପାଖକୁ ପଠାଇଦେଲେ । କାରଣ ଘଟଣାଟା ତାଙ୍କୁ ବଡ଼ କଷ୍ଟଦାୟକ ହୋଇଛି ।''

ହୋମ୍‌ସ କହିଲେ, ''ଆମେ ତ ଘଟଣାଟା ବିଷୟରେ ଏଯାଏ କିଛି ଜାଣିନାହୁଁ । ଦେଖୁଛି ଆପଣ ନିଜେ ଏ ପରିବାରର ଲୋକ ନୁହନ୍ତି ।''

''ଭଦ୍ରଲୋକ ବିସ୍ମିତ ହୋଇ ଚାହିଁରହିଲେ । ତା'ପରେ ତଳକୁ ମୁହଁ କରି ହସି ହସି କହିଲେ, ବୁଝିଲି, ଆପଣ ମୋ ମନୋଗ୍ରାମ୍‌ରୁ ଜେ. ଏଚ୍. ଅକ୍ଷର ଦି'ଟା ଦେଖିନେଇଛନ୍ତି । ମୁଁ ଭାବିଥିଲି ଆପଣ ଗୋଟେ ଆଶ୍ଚର୍ଯ୍ୟ କାମ କରିପାରିଛନ୍ତି । ମୋ ନାଁ ଜୋସେଫ୍ ହାରିସନ୍ । ପର୍‌ସିଙ୍କ ସାଥିରେ ମୋ ଭଉଣୀ ଆନିର ବିବାହ ସ୍ଥିର ହୋଇଛି । ସେଇ ହିସାବରେ ମୁଁ ଅନ୍ତତଃ ତାଙ୍କର ବନ୍ଧୁ । ମୋ ଭଉଣୀ ଦି'ମାସ ହେଲା ତାଙ୍କର ସେବା କରୁଛି । ପର୍‌ସି ବଡ଼ ଅଧୈର୍ଯ୍ୟ ହୋଇପଡ଼ିଛନ୍ତି । ଚାଲନ୍ତୁ, ଆମେ ଭିତରକୁ ଯିବା ।''

ଆମେ ଯେଉଁ ବଖରାକୁ ଗଲୁ, ସେ ଘରଟି ବୈଠକଖାନା ଆଉ ଶୋଇବା ଘର ଭାବରେ ସଜା ହୋଇଥିଲା । ଗୋଟେ ସୋଫା ଉପରେ ଜଣେ ଯୁବକ

ଶୋଇଥିଲେ । ସେ ଖୁବ୍ ଦୁର୍ବଳ ଆଉ ନିସ୍ତେଜ ଦେଖାଯାଉଥିଲେ । ପାଖ ଖୋଲା ଝରକାବାଟେ ବଗିଚାରୁ ଶୀତଳ ପବନ ବହିଆସୁଥାଏ । ତାଙ୍କ ପାଖରେ ଜଣେ ନାରୀ ବସିଥିଲେ । ଆମକୁ ଦେଖି ସେ ଉଠି ଠିଆ ହୋଇ କହିଲେ, ''ମୁଁ ଏଠୁ ଚାଲିଯିବି ପର୍‌ସି ?''

ପର୍‌ସି ତାଙ୍କ ହାତକୁ ଚାପିଧରି ତାଙ୍କୁ ଅଟକାଇଲେ । ତା'ପରେ କହିଲେ, ''କେମିତି ଅଛ ୱାଟ୍‌ସନ୍ ? ତୁମ ମୁହଁରେ ସେ ଦାଢ଼ି ଦେଖି ମୁଁ ତ ତୁମକୁ ଚିହ୍ନିପାରିଲି ନାହିଁ । ଇଏ ବୋଧେ ତୁମ ଖ୍ୟାତନାମା ବନ୍ଧୁ ମିଷ୍ଟର ସେର୍‌ଲକ୍ ହୋମ୍‌ସ ?''

ମୁଁ ପଦେ ଦି'ପଦ କହି ତାଙ୍କ ପରିଚୟ କରାଇ ଦେଲି । ଆମେ ଦୁହେଁ ଚଉକିରେ ବସିଲୁ । ସେ ହୃଷ୍ଟପୁଷ୍ଟ ଭଦ୍ରଲୋକ ସେ ଘରୁ ଚାଲିଯାଇଥିଲେ । କିନ୍ତୁ ତାଙ୍କ ଭଉଣୀ ରୋଗୀର ହାତଧରି ସେମିତି ଠିଆହୋଇଥାନ୍ତି । ସେ ଖୁବ୍ ସୁନ୍ଦରୀ । ଟିକିଏ ମୋଟା ଆଉ ଅଳ୍ପ ଉଚ୍ଚା ହେଲେ ବି ଗୋରାଦେହ, କଳା କଳା ଆଖି, ଆଉ ମୁଣ୍ଡରେ ଲମ୍ବା କଳାବାଳ । ସୋଫା ଉପରେ ଉଠିବସି ପର୍‌ସି କହିଲେ. ''ମୁଁ ଆପଣଙ୍କ ସମୟ ନଷ୍ଟ କରିବାକୁ ଚାହେନା ମିଷ୍ଟର ହୋମ୍‌ସ ! କଥାଟା ସିଧାସଳଖ କହୁଛି । ମୁଁ ବେଶ୍ ସୁଖଶାନ୍ତିରେ ଥିଲି । ମୋର ବିବାହର ସବୁ ବ୍ୟବସ୍ଥା ହୋଇସାରିଥିଲା । ଏତିକି ବେଳେ ମୋ ଉପରେ ଏ ଅଚାନକ ବିପଦ ପଡ଼ିଲା, ଆଉ ମୋର ସବୁ ଆଶା ଭରସା ଚୂନା ହୋଇଗଲା ।''

''ୱାଟ୍‌ସନ୍ ବୋଧହୁଏ ଆପଣଙ୍କୁ କହିଥିବେ, ମୁଁ ବୈଦେଶିକ ବ୍ୟାପାର ଅଫିସ୍‌ରେ କାମ କରୁଥିଲି । ମୋ ମାମୁ ଲର୍ଡ଼ ହୋଲଡ଼ହର୍‌ଷ୍ଟଙ୍କ ଯୋଗୁଁ ଖୁବ୍ ଶୀଘ୍ର ମୋର ପ୍ରମୋସନ ହୋଇଗଲା, ଆଉ ମୁଁ ବେଶ୍ ଉଚ୍ଚ ଆସନକୁ ଉଠିଗଲି । ମୋ ମାମୁ ଯେତେବେଳେ ବୈଦେଶିକ ବ୍ୟାପାର ବିଭାଗର ମନ୍ତ୍ରୀ ହେଲେ, ସେ ମୋତେ ଅନେକ ଗୁପ୍ତ ଆଉ ବିଶ୍ୱସ୍ତ କାମ କରିବାକୁ ଦେଲେ । ମୁଁ ବି ଖୁବ୍ ସଫଳତାର ସହିତ ସେ କାମ ସବୁ କରିପାରିଲି । ଶେଷରେ ମୋ କାର୍ଯ୍ୟଦକ୍ଷତା ଯୋଗୁଁ ମୋ ଉପରେ ତାଙ୍କର ପ୍ରଗାଢ଼ ବିଶ୍ୱାସ ଆସିଗଲା । ପ୍ରାୟ ଦଶ ସପ୍ତାହ ତଳେ, ମେ ମାସ ତେଇଶ ତାରିଖ ଦିନ ସେ ମୋତେ ତାଙ୍କ ରୁମ୍‌କୁ ଡାକିଲେ । ମୋ କାମ ପାଇଁ ମୋତେ ଖୁବ୍ ପ୍ରଶଂସା କଲେ । ତା'ପରେ ଆଉ ଗୋଟେ ଅତି ବିଶ୍ୱସ୍ତ ଆଉ ଗୋପନୀୟ କାମ କରିବାର ଦାୟିତ୍ୱ ମୋ ଉପରେ ଦେଲେ ।''

''ତାଙ୍କ ଆଲ୍‌ମିରାରୁ ଗୁଡ଼ା ହୋଇଥିବା କାଗଜ କିଛି ବାହାର କରି ସେ କହିଲେ, 'ଏଟା ଇଂଲଣ୍ଡ ଆଉ ଇଟାଲୀ ମଧ୍ୟରେ ହୋଇଥିବା ଗୁପ୍ତ ସନ୍ଧିର ମୂଳଲେଖା । ଏ ବିଷୟରେ ବାହାରେ କେତେଟା କଥା ଶୁଣାଯାଉଛି, କିନ୍ତୁ ଆଉ କିଛି ବାହାରେ ପ୍ରକାଶ ନ ପାଇବା ନିହାତି ଦର୍କାର । ଫ୍ରାନ୍ସ ଆଉ ରୁଷିଆର ଦୂତାବାସ ଏହାର ବିଷୟବସ୍ତୁ ଜାଣିବାପାଇଁ ଯଥେଷ୍ଟ ଅର୍ଥ ଖର୍ଚ୍ଚ କରିପାରନ୍ତି । ମୁଁ ଏକୁ ମୋ ଆଲମିରାରୁ ବାହାର କରନ୍ତି ନାହିଁ । କିନ୍ତୁ ଏହାର ଆଉ ଗୋଟେ କପି ନକଲ ନିହାତି ଦର୍କାର । ତୁମ ଅଫିସ୍‌ରେ ତୁମ ନିଜର ଗୋଟେ ଡେସ୍କ ଅଛି ବୋଧହୁଏ ?''

'ହଁ ଆଜ୍ଞା ।'

''ବେଶ୍ । ତେବେ ଏ ସନ୍ଧିପତ୍ରଟା ନିଅ । ତୁମ ଡେସ୍କରେ ଚାବିଦେଇ ରଖିବ । ସମସ୍ତେ ଅଫିସ୍ ଛାଡ଼ି ଯିବାପରେ ତୁମେ ରହିବା ପାଇଁ ମୁଁ ନିର୍ଦ୍ଦେଶ ଦେଇଦେବି । ତୁମେ ନିରୋଳାରେ ବସି ଏହାର କପି କରିବ । ଲେଖା ସରିଗଲେ ମୂଳଲେଖା ଆଉ କପି, ଦୁଇଟାଯାକ ତୁମ ଡେସ୍କରେ ରଖି ଚାବି ପକାଇଦେବ । କାଲି ସକାଳେ, ନିଜେ ଆଣି ମୋତେ ଦେବ ।' ମୁଁ କାଗଜଗୁଡ଼ା ଆଣିଲି ଆଉ –

''ଟିକିଏ ରହନ୍ତୁ ।'' ହୋମ୍‌ସ କହିଲେ, ''କଥାବାର୍ତ୍ତା ବେଳେ ଆପଣ ଏକା ଥିଲେ ?''

''ହଁ, କେବଳ ଆମେ ଦି'ଜଣ ।''

''ଘରଟା ଖୁବ୍ ବଡ଼ ?''

''ହଁ, ଲମ୍ବା ଆଉ ଚଉଡ଼ାରେ ତିରିଶ ଫୁଟ କରି ।''

''ଆପଣ ଘର ମଝିରେ ବସିଥିଲେ ?''

''ହଁ, ମଝିରେ ।''

''କଥାବାର୍ତ୍ତା ଖୁବ୍ ଧୀରେ କରୁଥିଲେ ?''

''ମୋ ମାମୁ ସବୁବେଳ ଅତି ଧୀରେ କଥା କହନ୍ତି । ମୁଁ ତ ପ୍ରାୟ କିଛି କଥା କହିନାହିଁ ।''

ଆଖି ଦି'ଟା ବୁଜି ହୋମ୍‌ସ କହିଲେ, ''ଧନ୍ୟବାଦ । ଏଥର କହନ୍ତୁ ।''

''ଅନ୍ୟ କିରାଣିମାନେ ଚାଲିଯିବାଯାଏ ମୁଁ ଅପେକ୍ଷା କଲି । କେବଳ ଜଣେ ଚାର୍ଲସ୍ ଗୋରୋଟଂର କେତେ କାମ ବାକି ଥିବାରୁ ସେ ରହିଲା । ତେଣୁ ମୁଁ

ଖାଇବା ପାଇଁ ବାହାରକୁ ଚାଲିଗଲି । ଫେରିଲାବେଳକୁ ସେ ଚାଲିଯାଇଥିଲା । ମୁଁ କାମ ସାରିବା ପାଇଁ ବଡ଼ ବ୍ୟଗ୍ର ଥିଲି । ସେଦିନ ଜୋସେଫ୍ ହାରିସନ୍ ସହରକୁ ଆସିବା କଥା ମୁଁ ଜାଣିଥିଲି । ସେ ଏଗାରଟାବେଳ ଟ୍ରେନ୍‌ରେ ଓକିଙ୍ଗ୍ ଫେରିବା କଥା । ଭାବିଲି ଯଦି ସମ୍ଭବ ହୁଏ, ମୁଁ ବି ସେଇ ଟ୍ରେନ୍‌ରେ ଫେରିବି ।

''ସନ୍ଧିପତ୍ରଟାକୁ ଦେଖିଲି । ଜାଣିଲି ମାମୁ ସେ ବିଷୟରେ କିଛି ଅତିରଞ୍ଜିତ କରି କହିନାହାନ୍ତି । ସନ୍ଧିଟାର ଟିକିନିଖି ବିବରଣୀ ମୁଁ କହୁନାହିଁ । ମୋଟ ଉପରେ ତ୍ରିଶକ୍ତି ପ୍ରତି ଗ୍ରେଟବ୍ରିଟେନ୍‌ର ମନୋଭାବ ସେଥିରେ ଲେଖାଥିଲା । ତା'ଛଡ଼ା ଭୂମଧ୍ୟସାଗରରେ ଫରାସୀ ନୌବାହିନୀ ଇଟାଲୀ ନୌବାହିନୀକୁ ପୂରା କବଳ କରିନେଲେ ଆମ ଦେଶ କି ନୀତି ଗ୍ରହଣ କରିବ, ତାହା ଏଥିରେ ଲେଖାଥିଲା । ଏଥିରେ ପୂରାପୂରି ନୌବାହିନୀ ବିଷୟ ଉଲ୍ଲେଖ ଥିଲା । ଶେଷରେ ଉଚ୍ଚପଦସ୍ଥ କର୍ମଚାରୀଙ୍କର ଦସ୍ତଖତ ଥିଲା । ମୁଁ ଲେଖାଟାରେ ଆଖି ବୁଲାଇ ଆଣି କପି କରିବା କାମରେ ଲାଗିଗଲି । ଲେଖାଟା ଖୁବ୍ ଲମ୍ବା । ଫରାସୀ ଭାଷାରେ ଲେଖା ହୋଇଥିଲା । ସେଥିରେ ଛବିଶଟା ଅଲଗା ଅଲଗା ପ୍ରବନ୍ଧ ଥିଲା । ମୁଁ ଯେତେ ଶୀଘ୍ର ପାରେ ଉତାରିବାରେ ଲାଗିଲି, କିନ୍ତୁ ନଅଟାବେଳକୁ ମୋଟେ ନଅଟା ପ୍ରବନ୍ଧ ଶେଷ ହେଲା । ତେଣୁ ଏଗାରଟାବେଳ ଟ୍ରେନ୍ ଧରିବାର ମୋଟେ ଆଶା ରହିଲା ନାହିଁ । ଦିନସାରା କାମ କରିଥାଏ । ତା' ସାଙ୍ଗକୁ ଗଣ୍ଡେ ଖାଇଦେଇଥାଏ । ତେଣୁ ମୋତେ ନିଦ ଲାଗିଲା । ଭାବିଲି କଫି କପେ ହେଲେ ନିଦଟା ଛାଡ଼ିଯିବ । ଶିଡ଼ିତଳେ ଗୋଟେ ଛୋଟ ଘରେ ଜଣେ ଜଗୁଆଳି ରାତିସାରା ରହେ । କେହି କର୍ମଚାରୀ ଅଫିସ୍ ସମୟ ବାଦ୍ ଅଧିକା କାମକଲେ ସେ ତାଙ୍କୁ କଫି କରି ଯୋଗାଏ । ତେଣୁ ତାକୁ ଡାକିବା ପାଇଁ ମୁଁ କଲିଂବେଲ୍‌ଟା ବଜାଇଲି । ମୋ ଡାକର ଉତ୍ତରରେ ଜଗୁଆଳି ବଦଳରେ ଜଣେ ବୟସ୍କା ସ୍ତ୍ରୀ ଲୋକ ଆସି ପହଞ୍ଚିଲା । ସେ ନିଜକୁ ଜଗୁଆଳିର ସ୍ତ୍ରୀ ବୋଲି ପରିଚୟ ଦେଲା । ମୁଁ ତାକୁ କଫି ଆଣିବା ପାଇଁ କହିଲି । ତା'ପରେ ଆଉ ଦି'ଟା ପ୍ରବନ୍ଧ ଶେଷ କଲି । ମୋତେ ଆହୁରି ବେଶି ବେଶି ନିଦ ଲାଗିଲା । ତେଣୁ ଗୋଡ଼ ହାତ ସଳଖିବା ପାଇଁ ଘର ଭିତରେ ଟିକେ ଏପଟ ସେପଟ ବୁଲିଲି । ମୋ କଫି ସେ ଯାଏ ଆସିନଥାଏ । କାହିଁକି ଡେରିହେଲା ବୁଝିପାରିଲି ନାହିଁ । ଦରଜା ଖୋଲି କ'ଣ ହେଲା ଦେଖିବା ପାଇଁ ମୁଁ ବାରଣ୍ଡାରେ ଚାଲ ଚାଲ ହୋଇ ଆଗେଇଲି । ସିଧା ବାରଣ୍ଡାରେ ଗୋଟେ ମାତ୍ର ବତି । ତେଣୁ ଆଲୁଅଟା ସଫା ନୁହେଁ । ବାରଣ୍ଡା

ଶେଷରେ ଗୋଟେ ମୋଡ଼ ଆଉ ସେଇଠି ପାହାଚ । ତା'ର ଶେଷରେ ଜଗୁଆଳିର ଘର । ମୋ ଅଫିସ୍ ସେଠିକି ଆସିବାକୁ ସେଇ ବାରଣ୍ଡା ଦେଇ ଗୋଟିଏ ମାତ୍ର ବାଟ । ଶିଡ଼ି ଅଧାରେ ଗୋଟେ ଲାଣ୍ଡିଙ୍ଗ । ସେଠୁ ଆଉ ଗୋଟେ ବାରଣ୍ଡା । ତା' ଶେଷରେ ଗୋଟେ ଛୋଟ ଶିଡ଼ି । ଶିଡ଼ି ମୁଣ୍ଡରେ ଗୋଟିଏ ଦରଜା । ଚାକରବାକରମାନେ ସେ ବାଟେ ଯିବା ଆସିବା କରନ୍ତି । ତା'ଛଡ଼ା ଯେଉଁ କର୍ମଚାରୀମାନେ ଚାର୍ଲସ ଷ୍ଟ୍ରୀଟରୁ ଆସନ୍ତି, ସେମାନଙ୍କୁ ସେ ବାଟଟା ସଳଖ ପଡ଼େ । ମୁଁ ଶିଡ଼ିରେ ଓହ୍ଲାଇ ବାଟ ହଲ୍‌ଘରେ ପହଞ୍ଚିଲି । ଦେଖିଲି ଜଗୁଆଳି ତା କୋଠରିରେ ନିଘୋଡ଼ ନିଦରେ ଶୋଇଛି । ସ୍ପିରିଟ୍ ଲ୍ୟାମ୍ପ ଉପରେ କେଟ୍‌ଲ୍‌ରେ ପାଣି ଟକ୍ ଟକ୍ ଫୁଟୁଛି । ଜଗୁଆଳିକୁ ଉଠାଇବାକୁ ମୁଁ ହାତ ବଢ଼ାଇବାକୁ ଯାଉଛି, ଏତିକିବେଳେ ତା' ମୁଣ୍ଡ ପାଖରେ ଗୋଟେ ବେଲ୍ ବାଜି ଉଠିଲା । ସେ ଚମକିପଡ଼ି ଉଠିପଡ଼ିଲା ।

''ମୋତେ ଦେଖି ଆଶ୍ଚର୍ଯ୍ୟ ହୋଇ ସେ କହିଲା, 'ମିଷ୍ଟର ଫେଲ୍‌ପସ୍ ଆଜ୍ଞା !''

''ହଁ, ମୋ କଫି ତିଆରି ହେଲା କି ନାହିଁ ଦେଖିବାକୁ ଆସିଲି ।''

''ପାଣିଟା ଗରମ କରୁ କରୁ ମୁଁ ଶୋଇପଡ଼ିଲି ଆଜ୍ଞା ।''

''ସେ ମୋ ମୁହଁକୁ ଆଉ ତା'ପରେ ବେଲ୍‌ଟା ଆଡ଼କୁ ଚାହିଁଲା । ତା' ମୁହଁରେ ବିସ୍ମୟଭାବ ବଢ଼ି ଉଠିଲା । ପଚାରିଲା, 'ଆପଣ ତ ଏଠି, ବେଲ୍‌ଟା ବଜାଇଲା କିଏ ?''

''ପଚାରିଲି, 'ବେଲ୍ ? ଏଟା କି ବେଲ୍ ?''

''ଆପଣ ଯେଉଁ ଘରେ କାମ କରୁଥିଲେ, ଏଟା ସେଇ ଘରର ବେଲ୍ ।''

''ମୋ ଛାତି ଥରିଉଠିଲା । ଯେଉଁ ଘରେ ଟେବୁଲ୍ ଉପରେ ମୋ ମୂଲ୍ୟବାନ କାଗଜ ପଡ଼ିଛି, ସେ ଘରେ ତା'ହେଲେ କେହି ପଶିଛି । ମୁଁ ଅଣନିଶ୍ୱାସୀ ହୋଇ ଧାଇଁଲି । ବାରଣ୍ଡାରେ କାହାକୁ ଦେଖିଲି ନାହିଁ । ଘର ଭିତରେ ବି କେହି ନଥିଲା । ମୁଁ ଯେଉଁଠି ଯାହା ରଖିଥିଲି, ସବୁ ସେମିତି ଥିଲା । କେବଳ ଯେଉଁ କାଗଜ ମୋ ଦାୟିତ୍ୱରେ ଦିଆଯାଇଥିଲା, ତାହା ଟେବୁଲ୍ ଉପରେ ନଥିଲା । କପିଟା ସେଠି ଥିଲା, ମୂଳଲେଖାଟା ଚାଲିଯାଇଥିଲା ।''

ହୋମ୍ସ ଚଉକି ଉପରେ ସଳଖି ବସି ହାତ ଦୁଇଟା ମଞ୍ଚି ଲାଗିଲେ । ଦେଖିଲି ଏ ସମସ୍ୟାଟା ତାଙ୍କ ମନକୁ ଛୁଇଁପାରିଛି । ଗୁଣୁ ଗୁଣୁ ହୋଇ ସେ କହିଲେ, ''ତା'ପରେ ଆପଣ କ'ଣ କଲେ ?''

''ହଠାତ୍ ମୁଁ ଭାବିଲି ଚୋର ନିଶ୍ଚୟ ଚାକରବାକର ଆସିବା ଦରଜାବାଟେ ଆସିଥିବ । କାରଣ ସଦର ଦରଜାବାଟେ ଆସିଥିଲେ ମୁଁ ନିଶ୍ଚୟ ତାକୁ ଭେଟିଥାନ୍ତି ।''

''ଆଚ୍ଛା ଲୋକଟା ଆପଣଙ୍କ ରୁମ୍‌ରେ କିମ୍ବା ବାରଣ୍ଡାରେ କେଉଁଠି ଲୁଚି ରହିନଥିଲା ବୋଲି ଆପଣ ନିଶ୍ଚିତ ?''

''ଧନ୍ୟବାଦ । ଏଥର କହନ୍ତୁ ।''

''ଜଗୁଆଳି ମୋ ମୁହଁରୁ ଜାଣିପାରିଥିଲା ଯେ କିଛି ଗୋଟେ ଦୁର୍ଘଟଣା ଘଟିଛି । ସେ ମୋ ପଛେ ପଛେ ଉପରକୁ ଆସିଥିଲା । ଆମେ ଦୁହେଁ ବାରଣ୍ଡା ଆଉ ଶିଡ଼ିଦେଇ ଚାର୍ଲସ ଷ୍ଟ୍ରୀଟ୍ କଡ଼କୁ ଦୌଡ଼ିଆସିଲୁ । ତଳେ ଦରଜାଟା ବନ୍ଦ ଥିଲା, କିନ୍ତୁ ସେଥିରେ ତାଲା ପଡ଼ିନଥିଲା । ଆମେ ଦରଜା ଖୋଲି ରାସ୍ତା ଉପରକୁ ବାହାରି ଆସିଲୁ । ମୋର ପରିଷ୍କାର ମନେଅଛି, ପାଖ ଚର୍ଚ୍ଚ ଘଣ୍ଟାରେ ଦଶଟା ବାଜିଲା ।''

ହୋମ୍ସ କହିଲେଏ ''ଏଇଟା ଖୁବ୍ ଗୁରୁତ୍ୱପୂର୍ଣ୍ଣ ।''

''ଖୁବ୍ ଅନ୍ଧାର ହୋଇଥାଏ । ତା' ସାଙ୍ଗକୁ ଝିପିଝିପି ବର୍ଷା ବି ଲାଗି ରହିଥାଏ । ଚାର୍ଲସ୍ ଷ୍ଟ୍ରୀଟ୍‌ରେ କେହି ଲୋକ ନଥିଲେ । କିନ୍ତୁ ହ୍ୱାଇଟ୍ ହଲ୍ ରାସ୍ତାରେ ଅନେକ ଗାଡ଼ି ଯିବାଆସିବା କରୁଥାଏ । ଆମେ ରାସ୍ତାର ଶେଷ ମୁଣ୍ଡକୁ ଦୌଡ଼ିଗଲୁ । ସେଠି ଜଣେ ପୋଲିସ୍ ଠିଆ ହୋଇଥିଲା ।''

''ଧଇଁସଇଁ ହୋଇ ମୁଁ କହିଲି, 'ଗୋଟେ ଡକାୟତି ହୋଇଯାଇଛି । ବୈଦେଶିକ ବ୍ୟାପାର ଅଫିସରୁ ଗୋଟେ ଖୁବ୍ ମୂଲ୍ୟବାନ ଲେଖା ଚୋରି ହୋଇଯାଇଛି । ଏ ବାଟେ କେହି ଲୋକ ଯିବାର ଦେଖିଛ ?''

''ମୁଁ ପ୍ରାୟ ପନ୍ଦର ମିନିଟ୍ ହେଲା ଏଠି ଠିଆ ହୋଇଛି ଆଜ୍ଞା । ତା' ଭିତରେ କେବଳ ଜଣେ ଲୋକ ଏ ବାଟେ ଯାଇଛି । ଜଣେ ଉଚ୍ଚା ଆଉ ବୟସ୍କା ମହିଳା । ତା' ଦେହରେ ଗୋଟେ ଚଦର ଥିଲା ।''

''ଢଗୁଆଳି କହିଉଠିଲା, ସେ ତ ମୋ ସ୍ତ୍ରୀ । ତା' ଛଡ଼ା ଆଉ କେହି ଯାଇ ନାହାନ୍ତି ?''

''ନା ।''

''ମୋ ହାତକୁ ଟାଣି ଲୋକଟା କହିଲା, 'ତା'ହେଲେ ଚୋରଟା ଆରବାଟେ ପଳାଇଯାଇଥିବ ।''

''ମୋ ମନ କିନ୍ତୁ ମାନିଲା ନାହିଁ । ବିଶେଷତଃ ଲୋକଟା ଯେମିତି ବ୍ୟସ୍ତହୋଇ ମୋତେ ଟାଣିଲା ମୋ ମନର ସନ୍ଦେହ ବଢ଼ିଗଲା । ପଚାରିଲି, ''ସେ ସ୍ତ୍ରୀ ଲୋକଟା କେଉଁଆଡ଼େ ଗଲା ?''

''ମୁଁ ଜାଣେନା ଆଜ୍ଞା ! ସେ ଏଇବାଟେ ଯିବାର ମୁଁ ଦେଖିଛି । କିନ୍ତୁ ତାକୁ ଲକ୍ଷ୍ୟ ରଖିବାର କିଛି କାରଣ ନଥିଲା । ସେ ଖୁବ୍ ତରତର ହୋଇ ଚାଲିଗଲା ।''

''କେତେ ସମୟ ହେଲା ସେ ଯାଇଛି ?''

''ଅଳ୍ପ କେତେ ମିନିଟ୍ ହେବ ।''

''ଗଲା ପାଞ୍ଚ ମିନିଟ୍ ଭିତରେ ହେବ ?''

''ପାଞ୍ଚ ମିନିଟ୍ରୁ ବେଶି ହେବ ନାହିଁ ଆଜ୍ଞା ।''

''ଢଗୁଆଳି କହି ଉଠିଲା, 'ଆପଣ କେବଳ ସମୟ ନଷ୍ଟ କରୁଛନ୍ତି ଆଜ୍ଞା ! ବର୍ତ୍ତମାନ ପ୍ରତିଟି ମିନିଟ୍ ମୂଲ୍ୟବାନ । ମୋ କଥା ବିଶ୍ୱାସ କରନ୍ତୁ । ଏଥିରେ ମୋ ସ୍ତ୍ରୀର କିଛି ହାତ ନାହିଁ । ରାସ୍ତା ସେ ମୁଣ୍ଡକୁ ଆସନ୍ତୁ । ହଉ ଆପଣ ଯଦି ନଯିବେ, ତେବେ ମୁଁ ଯାଉଛି ।'' ଏତିକି କହି ସେ ବିପରୀତ ଦିଗରେ ଦୌଡ଼ି ପଳାଇଲା ।

''ମୁଁ ତା' ପଛେ ପଛେ ଦୌଡ଼ି ଯାଇ ତା' ହାତକୁ ଧରିପକାଇ ପଚାରିଲି, 'ତୁମେ କେଉଁଠି ରୁହ ?''

''ସେ ଉତ୍ତର ଦେଲା, 'ବ୍ରିକ୍ସଟନ୍ର ଆଇଭି ଲେନ୍ର ୧୬ ନମ୍ବର ଘରେ, କିନ୍ତୁ ଭୁଲ ବାଟରେ ଯାଆନ୍ତୁ ନାହିଁ ଆଜ୍ଞା ! ରାସ୍ତା ସେ ମୁଣ୍ଡକୁ ଚାଲନ୍ତୁ । ଦେଖିବା ସେଠି କାଳେ କିଛି ଖବର ମିଳିପାରେ ।''

''ଦେଖିଲି ଲୋକଟାର କଥା ମାନିଲେ କିଛି କ୍ଷତି ହେବ ନାହିଁ । ପୋଲିସ୍ ଜଣକ ସାଥିରେ ଆମେ ଦୁହେଁ ଗଳି ସେ ମୁଣ୍ଡକୁ ଗଲୁ । ଦେଖିଲୁ ରାସ୍ତାରେ

ଅନେକ ଗାଡ଼ି ଆଉ ଅନେକ ଲୋକ ଯିବାଆସିବା କରୁଛନ୍ତି । ବର୍ଷା ଯୋଗୁଁ ସମସ୍ତେ ଶୀଘ୍ର ପଳାଇବାରେ ବ୍ୟସ୍ତ । ସେବାଟେ କେହି ଯାଇଛି କି ନାହିଁ ବୁଝିବା ପାଇଁ ସେମିତି କୌଣସି ଲୋକକୁ ଦେଖିଲୁ ନାହିଁ ।

''ତା'ପରେ ଆମେ ଅଫିସକୁ ଫେରିଆସିଲୁ । ଶିଡ଼ି, ବାରଣ୍ଡା ଚାରିଆଡ଼ ଖୋଜିଗଲୁ, କିନ୍ତୁ କିଛି ଫଳ ହେଲା ନାହିଁ । ଅଫିସକୁ ଆସିଥିବା ରାସ୍ତାରେ ଏକ ଅଠାଳିଆ ଗାଲିଚା ବିଛା ହୋଇଛି । ସେଥିରେ ପାଦଚିହ୍ନ ଖୁବ୍ ସହଜରେ ଦେଖାଯିବ । ଆମେ ତାକୁ ଖୁବ୍ ଯତ୍ନରେ ପରୀକ୍ଷା କଲୁ, କିନ୍ତୁ କୌଣସି ପାଦ ଚିହ୍ନ ଦେଖିଲୁ ନାହିଁ ।''

''ସେଦିନ ସନ୍ଧ୍ୟା ସାରା ବର୍ଷା ହେଉଥିଲା ?''

''ପ୍ରାୟ ସାତଟାବେଳୁ ।''

''ତା'ହେଲେ ନଅଟାବେଳକୁ ଯେଉଁ ସ୍ତ୍ରୀ ଲୋକ ଆପଣଙ୍କ ରୁମକୁ ଆସିଲା, ତା' କାଦୁଅ ଜୋତାର ଚିହ୍ନ କେମିତି ଗାଲିଚା ଉପରେ ରହିଲା ନାହିଁ ?''

''ଏଇ କଥାଟା ବି ମୋ ମନରେ ଉଠିଥିଲା । ଚାକରାଣୀମାନେ ଉପରକୁ ଗଲେ ତାଙ୍କ ଜୋତା ଖୋଲି ଜଗୁଆଳି ରୁମ୍‌ରେ ରଖି ଦିଅନ୍ତି ଆଉ ଚପଲ ପିନ୍ଧି ଉପରକୁ ଯାଆନ୍ତି ।''

''ତା'ହେଲେ ଠିକ୍ ଅଛି । ବର୍ଷା ହେଉଥିଲେ ବି କୌଣସି ଚିହ୍ନ ନଥିଲା ? ଘଟଣାଗୁଡ଼ିକ ବାସ୍ତବିକ୍ ଖୁବ୍ କୌତୂହଳପୂର୍ଣ୍ଣ । ତା'ପରେ ଆପଣ କ'ଣ କଲେ ?''

''ଆମେ ଘରଟା ବି ପରୀକ୍ଷା କରି ଦେଖିଲୁ । ଘରେ କୌଣସି ଗୁପ୍ତ ଦରଜା ନଥିଲା । ଝରକା ଦୁଇଟା ଭୂଇଁରୁ ତିରିଶ ଫୁଟ ଉଚ୍ଚରେ । ସେ ଦି'ଟା ବି ଭିତରୁ ବନ୍ଦ ଥିଲା । ମେଜିଆ ଉପରେ ଗାଲିଚା ବିଛା । ତେଣୁ ମେଜିଆରେ କୌଣସି ବାଟ ଥିବା ଅସମ୍ଭବ । ଛାତଟା ସାଧରଣ ଚୂନଲିପା ଛାତ । ମୁଁ ନିଶ୍ଚିତ ଭାବେ କହିପାରେ ଯେ କାଗଜଗୁଡ଼ା ଚୋରିକରିଥିବା ଲୋକ ଦରଜା ବାଟେ ଆସିଛି ।''

''ଘରେ ଯେଉଁ ଜାଗାରେ ନିଆଁ ଜଳାହୁଏ ?''

''ସେ ଘରେ ନିଆଁ ଜାଳିବା ପାଇଁ କୌଣସି ଜାଗା ନାହିଁ । ଘରେ ଭିତରେ ଗୋଟେ ଷ୍ଟୋଭ ଅଛି । କଲିଂବେଲ୍‌ର ଦଉଡ଼ିଟା ମୋ ଡେସ୍କ ପାଖ ତାରରେ ବନ୍ଧା । ତେଣୁ ଯେ ବେଲ୍‌ଟା ବଜାଇଛି, ସେ ନିଶ୍ଚୟ ଡେସ୍କ ପାଖକୁ ଯାଇଛି ।

କିନ୍ତୁ ଚୋର ବେଲ୍‌ଟା ବଜାଇବାକୁ ଯିବ କାହିଁକି ? ଏ ରହସ୍ୟ କିଛି ବୁଝାପଡୁ ନାହିଁ ।''

''ଏ ଘଟଣାଟା ନିଶ୍ଚୟ ଅସାଧାରଣ । ତା'ପରେ ଆପଣ କ'ଣ କଲେ ? ମୁଁ ଭାବୁଛି ଚୋର କାଳେ ସିଗାରେଟ୍ ମୁଣ୍ଡି, ଗ୍ଲୋଭ, ହେୟାର ପିନ୍ କିମ୍ବା ଅନ୍ୟ କିଛି ସଙ୍କେତ ଛାଡ଼ିଯାଇଥିବ ବୋଲି ଆପଣ ରୁମ୍‌ଟା ଖୋଜାଖୋଜି କରିଥିବେ । କିଛି ପାଇଲେ ?''

''ନା, ସେଭଳି କିଛି ଜିନିଷ ମିଳିଲା ନାହିଁ ।''

''କୌଣସି ଗନ୍ଧ ପାଇଲେ ନାହିଁ ।''

''ସେତେବେଳେ ଆମେ ସେକଥା ଭାବି ନଥିଲୁ ।''

''ଛାଡ଼, କୌଣସି ସିଗାରେଟ୍ ଗନ୍ଧ ଆମକୁ ଅନୁସନ୍ଧାନରେ ଖୁବ୍ ସାହାଯ୍ୟ କରିଥାନ୍ତା ।''

''ମୁଁ କେବେ ସିଗାରେଟ୍ ପିଏ ନାହିଁ । ତେଣୁ କୌଣସି ସିଗାରେଟ୍ ଗନ୍ଧ ଥିଲେ ମୁଁ ନିଶ୍ଚୟ ଜାଣିପାରିଥାନ୍ତି । ଘର ଭିତରେ କିଛି ସୂତ୍ର ନଥିଲା । କେବଳ ଗୋଟେ ମାତ୍ର କଥାରେ ସନ୍ଦେହ ହେଲା । ଜଗୁଆଳିର ସ୍ତ୍ରୀ ମିସେସ୍ ଟାଙ୍ଗେ ତରତର ହୋଇ ଘରକୁ ଯିବା କଥା । ଜଗୁଆଳିକୁ ପଚାରିବାରେ ସେ କିଛି ସନ୍ତୋଷଜନକ ଉତ୍ତର ଦେଇପାରିଲା ନାହିଁ । କେବଳ ଏତିକି କହିଲା ଯେ ସେଇ ସମୟରେ ସେ ସବୁଦିନ ଘରକୁ ଯାଏ । ମୁଁ ଆଉ ସେ ପୋଲିସ ଭାବିଲୁ ଯେ ସେ ସ୍ତ୍ରୀ ଲୋକଟା ନିଶ୍ଚୟ କାଗଜଗୁଡ଼ା ନେଇଛି । କିଛି କରିବା ପୂର୍ବରୁ ତାକୁ ଧରିବା ସବୁଠୁ ଭଲ ।''

''ସେତେବେଳକୁ ଖବରଟା ସ୍କଟ୍‌ଲାଣ୍ଡୟାର୍ଡ଼ରେ ପହଞ୍ଚିଗଲାଣି । ଡିଟେକ୍‌ଟିଭ୍ ମିଷ୍ଟର ଫୋର୍‌ବସ୍ ଆସି ପହଞ୍ଚି କେଶ୍‌ଟା ହାତକୁ ନେଲେ । ଆମେ ଗୋଟେ ଗାଡ଼ି ଭଡ଼ାକରି ଅଧଘଣ୍ଟାଏ ଭିତରେ ଠିକଣା ଜାଗାରେ ପହଞ୍ଚିଲୁ । ଜଣେ ତରୁଣୀ କବାଟ ଫିଟାଇଲା । ସେ ମିଷ୍ଟର ଟାଙ୍ଗେଙ୍କ ବଡ଼ଝିଅ । ତା' ମାଆ ସେ ଯାଏ ଫେରି ନଥାନ୍ତି । ଆମେ ସାମନା ପଟ ଘରେ ଅପେକ୍ଷା କଲୁ ।

''ପ୍ରାୟ ଦଶ ମିନିଟ୍ ପରେ କବାଟରେ ଠକ୍ ଠକ୍ ଶବ୍ଦ ହେଲା । ଏଇଠି ଆମେ ଗୋଟେ ବଡ଼ ଭୁଲ କରିବସିଲୁ । ସେଥିପାଇଁ ମୁଁ ନିଜକୁ ଦୋଷ ଦେଉଛି । ଆମେ ନିଜେ କବାଟ ନ ଖୋଲି ସେ ଝିଅକୁ ଛାଡ଼ିଦେଲୁ । ଶୁଣିଲୁ ସେ କହିଲା,

''ମାଆ, ଦି' ଜଣ ଲୋକ ତୁମକୁ ଅପେକ୍ଷା କରି ବସିଛନ୍ତି ।'' ମୁହୂର୍ତ୍ତକ ଭିତରେ ଆମେ ଜୋର୍‌ରେ ଚାଲିଯିବା ପାଦ ଶବ୍ଦ ଶୁଣିଲୁ । ମିଷ୍ଟର ଫୋର୍‌ବସ୍ ଧଡ୍ କରି କବାଟଟା ଖୋଲିଦେଲେ । ଆମେ ପଛପଟ ରୋଷେଇଘରଆଡ଼େ ଧାଇଁଗଲୁ, କିନ୍ତୁ ସ୍ତ୍ରୀ ଲୋକଜଣକ ଆମ ଆଗରୁ ପହଞ୍ଚି ଯାଇଥିଲା । ସେ ଘୁଣ୍ଣା କଲାପରି ଆମ ଆଡ଼େ ଚାହିଁଲା । ତା'ପରେ ମୋତେ ଚିହ୍ନିପାରି ହଠାତ୍ ଆଶ୍ଚର୍ଯ୍ୟ ହୋଇଗଲା । କହିଉଠିଲା, 'ଆରେ, ଆପଣ ତ ମିଷ୍ଟର ଫେଲ୍‌ପସ୍ !''

''ମୋ ସାଥି କହିଲେ, 'ହଁ, ହଁ ପଳେଇ ଆସିଲାବେଳେ ଆଉ କିଏ ବୋଲି ଭାବିଥିଲ ?' 'ମୁଁ ଭାବିଥିଲି ଦୋକାନୀ ବୋଲି । ତା' ସାଥିରେ ଆମର ଟିକିଏ ଗଣ୍ଡଗୋଳ ହୋଇଯାଇଛି ।''

''ଫୋର୍‌ବସ୍ କହିଲେ, 'ସେକଥା କହିଲେ ଚଳିବ ନାହିଁ । ବୈଦେଶିକ ବ୍ୟାପାର ଅଫିସରୁ ଗୋଟେ ମୂଲ୍ୟବାନ କାଗଜ ତୁମେ ନେଇଆସିଛ ବୋଲି ଆମର ସନ୍ଦେହ କରିବାର ଯଥେଷ୍ଟ କାରଣ ଅଛି । ସେଟା କାହାକୁ ଦେଇଦେବା ପାଇଁ ତୁମେ ଦୌଡ଼ି ଦୌଡ଼ି ଏଠାକୁ ପଳାଇଆସିଛ । ତୁମକୁ ଆମ ସାଥିରେ ସ୍କଟ୍‌ଲ୍ୟାଣ୍ଡୟାର୍ଡ଼ ଯିବାକୁ ପଡ଼ିବ । ସେଠି ତୁମକୁ ଖାନତଲାସ କରାଯିବ । ''

''ସେ ପ୍ରତିବାଦ ଆଉ ପ୍ରତିରୋଧ କଲା - କିନ୍ତୁ ବୃଥାରେ । ଗୋଟେ ଘୋଡ଼ାଗାଡ଼ିରେ ତାକୁ ଧରି ଆମେ ଆସିଲୁ । ତା' ଆଗରୁ ରୋଷେଇଘର ଭିତର ଆଉ ଘରଭିତର ନିଆଁଟା ପରୀକ୍ଷା କରି ଦେଖିନେଲୁ । ସନ୍ଦେହ ହେଲା ସେ ହୁଏତ କାଗଜଟା ନିଆଁରେ ପକାଇ ଦେଇଥିବ, କିନ୍ତୁ ଟୁକୁରା କାଗଜ ବା ପାଉଁଶର କିଛି ଚିହ୍ନ ନଥିଲା । ସ୍କଟ୍‌ଲାଣ୍ଡୟାର୍ଡ଼ରେ ପହଞ୍ଚିଲା ମାତ୍ରେ ତାକୁ ମହିଳା ପୋଲିସ୍ ଜିମାରେ ଦିଆଗଲା । ମୁଁ ଉଦ୍‌ବିଗ୍ନ ହୋଇ ଅପେକ୍ଷା କରିଥାଏ । ଶେଷରେ ମହିଳା ପୋଲିସ୍ ଫେରିଲା । କାଗଜର କୌଣସି ସନ୍ଧାନ ମିଳିଲା ନାହିଁ ।

''ଏବେ ମୋ ମନରେ ବଡ଼ ଭୟ ଆସିଗଲା । ଏ ପର୍ଯ୍ୟନ୍ତ ମୁଁ କାମରେ ଲାଗିଯାଇଥିଲି । ଅନ୍ୟ କିଛି ଭାବିବାକୁ ବେଳ ନଥିଲା । କାଗଜଗୁଡ଼ା ଫେରି ପାଇବି ବୋଲି ମୋର ଦୃଢ଼ ଆଶା ଥିଲା । ତେଣୁ କାଗଜ ନ ମିଳିଲେ କ'ଣ ହେବ ସେକଥା ମୋଟେ ଭାବିନଥିଲି । ଏବେ ମୋର ଅବସ୍ଥା ବୁଝିପାରିଲି । ଅବସ୍ଥା ଅତି ସାଂଘାତିକ । ୱାଟ୍‌ସନ୍ କହିବେ, ମୁଁ ସ୍କୁଲରେ ପଢ଼ିଲାବେଳେ ଟିକିଏ କଥାରେ ବିଚଳିତ ହୋଇଯାଉଥିଲି । ସେଟା ମୋ ପ୍ରକୃତି । ମୁଁ ମୋ ମାମୁ

ଆଉ ସହକର୍ମୀମାନଙ୍କ କଥା ଭାବିଲି । ମୋ ଯୋଗୁଁ ସେ କି ନିନ୍ଦା ନ ଶୁଣିବେ ! ଦୈବାତ୍ ଏ ଦୁର୍ଘଟଣା ଘଟିଛି ବୋଲି କେହି ବିଶ୍ୱାସ କରିବେ ନାହିଁ । ମୋ ଅବସ୍ଥା ସରିଗଲା । ତା'ପରେ ମୁଁ କ'ଣ କଲି ଜାଣେନା । ମୋର ଟିକିଏ ଟିକିଏ ମନେପଡୁଛି, କେତେକ କର୍ମଚାରୀ ଆସି ମୋତେ ଘେରିଯାଇ ସାନ୍ତ୍ୱନା ଦେଉଥାନ୍ତି । ତାଙ୍କ ଭିତରୁ ଜଣେ ଗାଡ଼ିରେ ମୋ ସାଥିରେ ଉଆଟର୍‌ଲୁ ଯାଏ ଆସିଲେ, ଆଉ ମୋତେ ଓକିଙ୍ଗ୍ ଆସୁଥିବା ଟ୍ରେନ୍‌ରେ ବସାଇଦେଲେ । ସେ ମୋ ସାଥିରେ ଆସିଥାନ୍ତେ, କିନ୍ତୁ ଆମ ଘରପାଖେ ରହୁଥିବା ଡାକ୍ତର ଫେରିଅର୍ ସେ ଗାଡ଼ିରେ ଆସୁଥିଲେ । ଡାକ୍ତର ଦୟାକରି ମୋତେ ସାଥିରେ ନେଇଆସିଲେ । ସେ ସେତକ କଲେ ବୋଲି ରକ୍ଷାହେଲା । କାରଣ ଷ୍ଟେସନରେ ଥରେ ମୁଁ ଅଚେତ୍ ହୋଇଗଲି । ଘରେ ପହଞ୍ଚିଲାବେଳକୁ ମୁଁ ପ୍ରାୟ ପାଗଳ ହୋଇଯାଇଥିଲି । ଡାକ୍ତର କଲିଂବେଲ୍‌ଟା ବଜାଇବାରୁ ଆମ ଘରେ ସମସ୍ତେ ବିଛଣାରୁ ଉଠିପଡ଼ିଲେ । ମୋର ଏ ଅବସ୍ଥା ଦେଖି ସେମାନେ କ'ଣ ହୋଇଥିବେ, ଆପଣ ଅନୁମାନ କରନ୍ତୁ । ବିଚାରୀ ଆନ ଆଉ ମୋ ମାଆ ଏକାବେଳକେ ଭାଙ୍ଗିପଡ଼ିଲେ । ଡାକ୍ତର ଫେରିଅର୍ ଷ୍ଟେସନରେ ଡିଟେକ୍‌ଟିଭ୍‌ଙ୍କଠାରୁ ସବୁ କଥା ଶୁଣିଥିଲେ । ସେ ଘରେ ସମସ୍ତଙ୍କ ଆଗେ ସେକଥା କହିଲେ, କିନ୍ତୁ ତାଦ୍ୱାରା କିଛି ଲାଭ ହେଲା ନାହିଁ । ସମସ୍ତେ ଦେଖିଲେ ମୋ ଅବସ୍ଥା ଯାହା, ମୁଁ ଅନେକ ଦିନ ଯାଏ ବେମାର ପଡ଼ିରହିବି । ତେଣୁ ଜୋସେଫ୍ ହାରିସନ୍‌ଙ୍କୁ ତାଙ୍କର ଏ ଶୋଇବା ଘର ଛାଡ଼ିବାକୁ ପଡ଼ିଲା, ଆଉ ମୁଁ ଏ ଘରେ ରହିଲି । ଏଇଠି ଆଜିକି ନଅ ସପ୍ତାହ ହେଲା ମୁଁ ଏମିତି ପଡ଼ିରହିଛି । କେତେବେଳେ ଅଚେତ ହୋଇଯାଉଛି, କେତେବେଳେ ମାନସିକ ଜ୍ୱରରେ ଘାଣ୍ଟି ହେଉଛି । ଡାକ୍ତରଙ୍କ ଚିକିତ୍ସା ଆଉ ମିସ୍ ହାରିସନ୍‌ଙ୍କ ସେବା ଶୁଶ୍ରୂଷା ଯୋଗୁଁ ମୁଁ ଆଜିଯାଏ ବଞ୍ଚିରହି ଆପଣଙ୍କ ସଙ୍ଗେ କଥାବାର୍ତ୍ତା କରୁଛି । ଦିନସାରା ସେ ମୋ ସେବାରେ ଲାଗିଛନ୍ତି । ରାତିରେ ଜଣେ ନର୍ସ ମୋତେ ଦେଖୁଛନ୍ତି । କାରଣ ପାଗଳ ଅବସ୍ଥାରେ ମୁଁ କେତେବେଳେ କ'ଣ କରିଦେଇପାରେ । ମୋର ଚିନ୍ତାଶକ୍ତି ଧୀରେ ଧୀରେ ଫେରିବାକୁ ଲାଗିଲା, କିନ୍ତୁ ଏଇ ତିନିଦିନ ହେଲା ମୁଁ ମୋର ସ୍ମୃତିଶକ୍ତି ପୂରା ଫେରିପାଇଛି । ବେଳେବେଳେ ମୁଁ ଭାବୁଛି, ତା ନ ହୋଇଥିଲେ ବରଂ ଭଲ ହୋଇଥାନ୍ତା । ସ୍ମୃତିଶକ୍ତି ଆସିଲା ପରେ ମୁଁ ମିଷ୍ଟର ଫୋର୍‌ବସ୍‌ଙ୍କ ପାଖକୁ ଟେଲିଗ୍ରାମ୍ କଲି । ସେ ଆସିଲେ, 'କହିଲେ ଯେ ସବୁ

ପ୍ରକାର ଚେଷ୍ଟା କରାଯାଉଛି । ତଥାପି ଏ ଯାଏ କିଛି ସୂତ୍ରର ସନ୍ଧାନ ମିଳିଲ ନାହିଁ । ଚଗୁଆକି ଆଉ ତା' ସ୍ତ୍ରୀକୁ ସବୁପ୍ରକାର ପରୀକ୍ଷା କରାଯାଉଛି, କିନ୍ତୁ ଘଟଣାଟା ଉପରେ କିଛି ଆଲୋକପାତ ହୋଇନାହିଁ । ତା'ପରେ ଗୋରୋଟ୍ ଉପରେ ପୋଲିସ୍‌ର ସନ୍ଦେହ ହେଲା । ଆପଣଙ୍କର ମନେଥିବ ସେ ବାକିଆ କାମ କରିବା ପାଇଁ ଅଫିସ୍ ସମୟ ପରେ ସେଠି ଥିଲା । ତାର ଫରାସୀ ନାଁ ଆଉ ସେ ଅଫିସ୍‌ରେ ଡେରିକରି ରହିବା ହେଲା ତା' ଉପରେ ସନ୍ଦେହର କାରଣ, କିନ୍ତୁ ସେ ଅଫିସ୍ ଛାଡ଼ିଯିବା ଯାଏ ମୁଁ ମୋ କାମ ଆରମ୍ଭ କରିନଥିଲି । ତାକୁ ଏଥିରେ ସଂପୃକ୍ତ କରିବା ପାଇଁ କିଛି ପ୍ରମାଣ ମିଳିଲା ନାହିଁ । ତେଣୁ ଘଟଣାଟା ସେତିକିରେ ରହିଲା । ଏବେ ମୁଁ ଆପଣଙ୍କ ଉପରେ ମୋର ଶେଷ ଆଶାଭରସା ରଖିଛି । ଆପଣ ଯଦି କିଛି ନ କରନ୍ତି, ତେବେ ମୋ ଚାକିରି, ମୋ ମାନସମ୍ମାନ ସବୁ ଯିବ । ମୋ ଜୀବନ ନଷ୍ଟ ହୋଇଯିବ ।''

ଏତେଗୁଡ଼ାଏ କଥା ଏକାବେଳେ କହିଯିବାରୁ ପର୍‌ସି ବଡ଼ କ୍ଳାନ୍ତ ହୋଇଗଲା, ଆଉ କୁସନ୍ ଉପରେ ପଡ଼ିଗଲା । ନର୍ସ ତାଙ୍କୁ କିଛି ଔଷଧ ପିଆଇଦେଲା । ହୋମ୍‌ସ ମୁଣ୍ଡଟା ପଛକୁ ଝୁଲାଇ ଆଖି ବୁଜି ବସିଥାନ୍ତି ।

ଶେଷରେ ସେ କହିଲେ, ''ଆପଣ ସବୁ କଥା ଏତେ ଟିକିନିଖି କରି କହିଛନ୍ତି ଯେ ମୋର ଆଉ ପ୍ରାୟ କିଛି ପଚାରିବାର ନାହିଁ । ତେବେ ଗୋଟେ ଖୁବ୍ ଗୁରୁତ୍ୱପୂର୍ଣ୍ଣ କଥା । ଆପଣ ଏ କାମଟା କରିବା ଦାୟିତ୍ୱ ନେଇଛନ୍ତି ବୋଲି କାହାକୁ କହିଥିଲେ କି ?''

''କାହାରିକୁ ନୁହେଁ ।''

''ଧରନ୍ତୁ ଏଇ ମିସ୍ ହାରିସନ୍‌ଙ୍କୁ ?''

''ନା, ମୁଁ କାମର ଆଦେଶ ପାଇବା ଆଉ କାମ କରିବା ଭିତରେ ଓକିଙ୍ଗ୍ ଆସିନାହିଁ ।''

''ଆପଣଙ୍କ ସାଙ୍ଗସାଥି କେହି ଦୈବାତ୍ ଆପଣଙ୍କ ପାଖକୁ ଯାଇନାହାନ୍ତି ?''

''ନା ।''

''ସେମାନଙ୍କ ଭିତରୁ କେହି ଆପଣଙ୍କ ଅଫିସ୍ କେଉଁଟା, ସେଠିକି କେଉଁ ବାଟେ ଯିବାକୁ ହେବ, ଜାଣନ୍ତି ?''

''ହଁ, ପ୍ରାୟ ସମସ୍ତେ ସେ ଜାଗା ଦେଖିଛନ୍ତି ।''

''ଆପଣ ଯେତେବେଳେ କାହାକୁ କିଛି କହି ନାହାନ୍ତି, ଏ ପ୍ରଶ୍ନର ଆବଶ୍ୟକତା ନାହିଁ ।''

''ମୁଁ କାହାକୁ କିଛି କହି ନାହିଁ ।''

''ଆପଣ ସେ ଜଗୁଆଳି ବିଷୟରେ କିଛି ଜାଣନ୍ତି ?''

''କେବଳ ଏତିକି ଜାଣେ ସେ ଆଗେ ସୈନ୍ୟଦଳରେ କାମ କରୁଥିଲା ।''

''କେଉଁ ଦଳରେ ?''

''ଶୁଣିଛି, କୋଲ୍‌ଡ଼ ଷ୍ଟ୍ରୀମ୍ ଗାର୍ଡ଼ ଦଳରେ ।''

''ଧନ୍ୟବାଦ । ମୁଁ ଫୋର୍‌ବସ୍‌ଙ୍କ ପାଖରୁ ସବୁ କଥା ଜାଣିପାରିବି । ସେମାନେ ତଥ୍ୟ ଜମା କରିବାରେ ଖୁବ୍ ଧୁରନ୍ଧର, କିନ୍ତୁ ତାକୁ କାମରେ ଲଗାଇପାରନ୍ତି ନାହିଁ । ଗୋଲାପ ଫୁଲ କି ସୁନ୍ଦର ପଦାର୍ଥ !''

''ସେ ଖୋଲା ଝରକା ପାଖକୁ ଚାଲିଗଲେ । ଡେମ୍ପଲଗା ଗୋଲାପଫୁଲଟିଏ ହାତବଢ଼ାଇ ତୋଳି ଆଣି ତାକୁ ଦେଖିବାରେ ଲାଗିଲେ । ତାଙ୍କ ଚରିତ୍ରରେ ଏ ଗୋଟାଏ ନୂଆ କଥା ଦେଖିଲି । କାରଣ ପ୍ରାକୃତିକ ଜିନିଷ ପ୍ରତି ତାଙ୍କର ଆଗ୍ରହ ଥିବା ମୁଁ ଆଗରୁ କେବେହେଲେ ଦେଖି ନାହିଁ । ଝରକା ଉପରକୁ ଆଉଜି ଠିଆହୋଇ ସେ କହିଲେ, ''ଧର୍ମ ଉପରେ ଅନୁଶୀଳନ ଯେତେ ଦର୍କାର ଅନ୍ୟ ବିଷୟରେ ସେତେ ନୁହେଁ । ପ୍ରକୃତ ଅନୁଶୀଳନକାରୀ ତା ଅନୁଶୀଳନକୁ ପୂରା ବିଜ୍ଞାନସମ୍ମତ କରିପାରେ । ମୁଁ ଭାବେ ଭଗବାନ୍‌ଙ୍କ କରୁଣାର ସବୁଠୁ ତୁଙ୍ଗ ଉଦାହରଣ ଏଇ ଫୁଲ । ଅନ୍ୟ ସବୁ ଜିନିଷ, ଆମର ଶକ୍ତି, ଇଚ୍ଛା, ଖାଦ୍ୟ ଆଦି ବଞ୍ଚିରହିବା ପାଇଁ ପ୍ରୟୋଜନ । କିନ୍ତୁ ଏଇ ଗୋଲାପ ହେଲା ଅଧିକା ଜିନିଷ । ଏହାର ଗନ୍ଧ ଆଉ ରଙ୍ଗ ଜୀବନକୁ ସରସ ସୁନ୍ଦର କରେ, କିନ୍ତୁ ଏହା ଜୀବନର ଏକ ଉପାଦାନ ନୁହେଁ । ଭଗବାନ୍ ହିଁ କେବଳ ଆମକୁ ଏ ଅଧିକା ଜିନିଷ ଦେଇଥାନ୍ତି । ତେଣୁ ଏଇ ଫୁଲରୁ ଆମେ ଅନେକ କିଛି ଆଶା କରିପାରୁ ।''

ପର୍‌ସି ଏବଂ ତାଙ୍କ ସେବାକାରିଣୀ ହୋମ୍‌ସଙ୍କ ଆଡ଼କୁ ବିସ୍ମୟ ଆଉ ହତାଶରେ ଚାହିଁରହିଥାନ୍ତି । ଗୋଲାପଟା ହାତରେ ଧରି ସେ ଯେମିତି ଦିବାସ୍ୱପ୍ନ ଦେଖୁଛନ୍ତି । କିଛି ସମୟ ଏମିତି କଟିଗଲା । ଶେଷରେ ତରୁଣୀ ହାରିସନ୍

କହିଲେ, ''ଆପଣ ଏ ରହସ୍ୟ ଉଦ୍‌ଘାଟନ କରିବାର କିଛି ଆଶା ଦେଖୁଛନ୍ତି ମିଷ୍ଟର ହୋମ୍‌ସ ?'' ତାଙ୍କର ସ୍ୱର ବଡ଼ ରୁକ୍ଷ ।

ଟିକିଏ ଚମକିପଡ଼ିଲା ପରି ହୋଇ ବାସ୍ତବତାକୁ ଫେରି ହୋମ୍‌ସ କହିଲେ, ''ଓହୋ, ଏ ସମସ୍ୟା । ହଁ, କେଶ୍‌ଟା ଖୁବ୍ ଜଟିଳ ଆଉ ଦୁର୍ବୋଧ ବୋଲି ଅସ୍ୱୀକାର କରାଯାଇପାରେନା, କିନ୍ତୁ ମୁଁ ପ୍ରତିଶ୍ରୁତି ଦେଇପାରେ ଯେ ମୁଁ ଘଟଣାଟା ଦେଖିବି । କିଛି ପଏଣ୍ଟ ପାଇଲେ ଆପଣଙ୍କୁ ଜଣାଇବି ।''

''ଆପଣ କିଛି ସୂତ୍ର ଦେଖିପାରୁଛନ୍ତି ?''

''ଆପଣ ମୋତେ ସାତଟା ସୂତ୍ର ଦେଇଛନ୍ତି, କିନ୍ତୁ ତାର ମୂଲ୍ୟ କେତେ କହିବା ଆଗରୁ ମୁଁ ତାକୁ ପରୀକ୍ଷା କରି ଦେଖିବି ।''

''ଆପଣ କାହାକୁ ସନ୍ଦେହ କରୁଛନ୍ତି ?''

''ମୋ ନିଜକୁ ।''

''କାହିଁକି ?''

''ଖୁବ୍ ଶୀଘ୍ର ଗୋଟେ ସିଦ୍ଧାନ୍ତ କରିନେଇଥିବାରୁ ।''

''ତା'ହେଲେ ଲଣ୍ଡନ ଫେରିଯାଇ ଆପଣଙ୍କ ସିଦ୍ଧାନ୍ତକୁ ପରୀକ୍ଷା କରି ଦେଖୁଥାନ୍ତୁ ।

ଚଉକିରୁ ଉଠି ହୋମସ୍ କହିଲେ, ''ଆପଣଙ୍କ ଉପଦେଶ ଖୁବ୍ ମୂଲ୍ୟବାନ ମିସ୍ ହାରିସନ୍ । ମୁଁ ଭାବୁଛି, ଉଆଟ୍‌ସନ ଆମର ଏଠି ଆଉ କିଛି କରିବାର ନାହିଁ । ହଁ ମିଷ୍ଟର ଫେଲ୍‌ପସ୍, ମିଛ ଆଶାରେ ମୁଣ୍ଡ ଖେଳାଇବେ ନାହିଁ । ଘଟଣାଟା ଖୁବ୍ ଜଟିଳ ।''

ଫେଲ୍‌ପସ୍ କହିପକାଇଲା, ''ଆପଣଙ୍କୁ ପୁଣି ନ ଦେଖିବା ଯାଏ ମୁଁ ସ୍ଥିର ହୋଇପାରିବି ନାହିଁ ।

''ଆଜି ଯେଉଁ ଟ୍ରେନ୍‌ରେ ମୁଁ ଆସିଥିଲି, କାଲି ସେଇ ଟ୍ରେନ୍‌ରେ ଆସିବି, କିନ୍ତୁ ଯେତେ ଦୂର ସମ୍ଭବ ମୋଠୁ କିଛି ଖବର ପାଇପାରିବେ ନାହିଁ ।''

''ଆପଣ ଆସିବା ପ୍ରତିଶ୍ରୁତି ଦେଲେ, ସେଇ ଯଥେଷ୍ଟ । ଭଗବାନ୍ ଆପଣଙ୍କର ମଙ୍ଗଳ କରନ୍ତୁ । ଆପଣଙ୍କ କଥା ଶୁଣି ମୋ ଦେହରେ ଜୀବନ ପଶିଲା । ହଁ, ଲର୍ଡ୍ ହୋଲ୍‌ଡ୍ ହର୍‌ଷ୍ଟ ମୋ ପାଖକୁ ଖଣ୍ଡେ ଚିଠି ଦେଇଛନ୍ତି ।''

''ସତେ ! କ'ଣ ଲେଖିଛନ୍ତି ?''

''ଅବଶ୍ୟ ସେମିତି କିଛି କଡ଼ାକରି ଲେଖିନାହାନ୍ତି । ମୋ ବେମାରି ଯୋଗୁଁ ସେ ରାଗି କରି କିଛି ଲେଖିନାହାନ୍ତି । ଘଟଣାଟା ଖୁବ୍ ଗୁରୁତ୍ୱପୂର୍ଣ୍ଣ ଆଉ ମୋ ଭବିଷ୍ୟତ ବିଷୟରେ କିଛି କରାଯିବ ନାହିଁ ବୋଲି ବି ଲେଖିଛନ୍ତି । ତା'ର ଅର୍ଥ ଅବଶ୍ୟ ମୁଁ ଚାକିରିରୁ ଡିସ୍‌ମିସ୍ (ବରଖାସ୍ତ) ହେବି, କିନ୍ତୁ ମୋ ଦେହ ଭଲ ହେଲାପରେ ଯାହାହେବ ।''

''ସେଇଟା ଯଥାର୍ଥ ବିଚାର । ହଉ ଆସ ୱାଟ୍‌ସନ୍ ! ଟାଉନ୍‌ରେ ଆମର ଆହୁରି ଅନେକ କାମ ଅଛି ।''

ମିଷ୍ଟର ଜୋସେଫ୍ ହାରିସନ୍ ଗାଡ଼ିରେ ଆଣି ଆମକୁ ଷ୍ଟେସନରେ ଛାଡ଼ିଦେଲେ । ଆମେ ପୋର୍‌ଟସ୍ ମାଉଥ୍ ଟ୍ରେନ୍‌ରେ ଆସିଲୁ । ହୋମ୍‌ସ ଖୁବ୍ ଗଭୀର ଚିନ୍ତା କରୁଥାନ୍ତି । ଆମେ କ୍ଲାପାମ୍ ଜଙ୍କସନ୍ ଛାଡ଼ିବା ଯାଏ ସେ ମୋଟେ ପାଟି ଫିଟାଇନାହାନ୍ତି ।

ତା'ପରେ କହିଲେ, ''ମୁଁ ଭାବୁଛି ଏଇ ପର୍‌ସି ଫେଲ୍‌ପସ୍ ବୋଧହୁଏ ମଦ ଖାଆନ୍ତି ନାହିଁ ?''

''ମୁଁ ଭାବୁଛି ନୁହେଁ ।''

''ମୁଁ ବି ସେଇଆ ଭାବୁଛି । ତେବେ ଯାହା କିଛି ସମ୍ଭବ ଆମକୁ ସବୁ ବିଚାରକୁ ନେବାକୁ ପଡ଼ିବ । ବିଚରା ଖୁବ୍ ଗହୀର ପାଣିରେ ଉବେଇଟୁବେଇ ହେଉଛି । ଆମେ ତାକୁ କୂଳରେ ଲଗାଇପାରିବା କି ନାହିଁ ସେ ଏକ ବିରାଟ ପ୍ରଶ୍ନ । ଆଚ୍ଛା ମିସ୍ ହାରିସନ୍‌ଙ୍କ ବିଷୟରେ ତୁମର ମତ କ'ଣ ?''

''ଖୁବ୍ ଦୃଢ଼ ଚରିତ୍ରର ଝିଅ ।''

''ହଁ, ଖୁବ୍ ଭଲ । ସେ ଆଉ ତାଙ୍କ ଭାଇ ନର୍‌ଦମ୍ବରଲାଣ୍ଡ ଆଡ଼ର ଜଣେ ଭଦ୍ରଲୋକଙ୍କର ଦୁଇଟି ବୋଲି ପିଲା । ଗଲା ଶୀତଦିନେ ପର୍‌ସି ସିଆଡ଼େ ବୁଲି ଯାଇଥିଲେ । ଏ ଝିଅଟି ସାଥିରେ ମିଶି ତାକୁ ବିବାହ କରିବାର ସ୍ଥିର କଲେ । ଝିଅଟି ତାଙ୍କ ଘରକୁ ଆସିଲା । ତା' ଭାଇ ମଧ ଛାଡ଼ିବାକୁ ଆସିଲା । ତା'ପରେ ଏ ଦୁର୍ଘଟଣା ଘଟିଲା । ଝିଅଟି ତା' ପ୍ରେମିକର ସେବା କରିବା ପାଇଁ ରହିଲା । ଜୋସେଫ୍ ବି ଦେଖିଲା ଏଠି ଆରାମରେ ଅଛି । ତେଣୁ ସେ ବି ରହିଗଲା । ଆଜି କିନ୍ତୁ ଆମକୁ ଗୁଡ଼ାଏ ଅନୁସନ୍ଧାନ କରିବାକୁ ପଡ଼ିବ ।''

''ମୋର ତ କାମ - ।'' ହୋମ୍‌ସ ଟିକିଏ ରୁକ୍ଷଭାବେ କହିଲେ, ''ଯଦି ମୋ କାମଠୁ ତୁମ କାମଟା ବଡ଼ ବୋଲି ମନେକର - ।'' 'ନା, ନା, ମୁଁ କହୁଥିଲି, ମୋର ତ ଏଇଲେ ବିଶେଷ କାମ ନାହିଁ । ତେଣୁ କିଛି ଅସୁବିଧା ହେବ ନାହିଁ ।' ''ତାହାହେଲେ ଖୁବ୍ ଭଲ । ଆମେ ସାଥିହୋଇ ଘଟଣାର ଅନୁସନ୍ଧାନ କରିବା । ମୁଁ ଭାବୁଛି ପ୍ରଥମେ ଆମେ ଫୋରବସ୍‌ଙ୍କୁ ଦେଖାକରିବା । ସେ ବୋଧହୁଏ ଆମକୁ ସବୁ ଟିକିନିଖି ବିବରଣୀ ଦେଇପାରିବେ । ତା ହେଲେ ଅନୁସନ୍ଧାନଟା କେଉଁ ଦିଗରୁ ଆରମ୍ଭ କରିବାକୁ ହେବ, ଆମେ ଠିକ୍ କରିପାରିବା । ତୁମେ ପରା କହୁଥିଲ କ'ଣ ଗୋଟେ ସୂତ୍ର ପାଇଛ ।'' ''ଗୋଟେ କାହିଁକି, କେତେଗୁଡ଼ାଏ ସୂତ୍ର ଆମ ହାତରେ ଅଛି । ଆହୁରି ଅନୁସନ୍ଧାନ କରି ଆମେ ତା'ର ସତ୍ୟାସତ୍ୟ ଠିକ୍ କରିବା । ଯେଉଁ ଅପରାଧର କିଛି ଉଦ୍ଦେଶ୍ୟ ନଥାଏ, ତାକୁ ଖୋଜି ବାହାର କରିବା ସବୁଠୁ କଠିନ । ଏ ଅପରାଧ କିନ୍ତୁ ଉଦ୍ଦେଶ୍ୟହୀନ ନୁହେଁ । ଯା ଦ୍ୱାରା କାହାର ଲାଭ ହେବ ? ଏଠି ଫରାସୀ ଦୂତାବାସ ଆଉ ରୁଷିଆ ଦୂତାବାସ ଅଛି । ଯେ ଏ ସନ୍ଧି କାଗଜ ନେଇଛି, ସେ ତାଙ୍କୁ ବିକ୍ରି କରିଦେଇପାରେ । ତା ଛଡ଼ା ଲର୍ଡ୍ ହୋଲ୍‌ଡ଼ ହର୍‌ଷ୍ଟ ବି ଅଛନ୍ତି ।''

''ଲର୍ଡ୍ ହୋଲ୍‌ଡ଼ ହର୍‌ଷ୍ଟ !''

''ଦେଖ, ଯା ବି ହୋଇପାରେ ଯେ ଏଭଳି ଗୋଟେ ଦଲିଲ୍ ନଷ୍ଟ ହୋଇଗଲେ, ଜଣେ ରାଜନୀତିଜ୍ଞ ଦୁଃଖ କରିନପାରେ ।''

''କିନ୍ତୁ ଲର୍ଡ୍ ହୋଲଡ଼ ହର୍‌ଷ୍ଟଙ୍କ ପରି ସମ୍ମାନାସ୍ପଦ ରାଜନୀତିଜ୍ଞ ।''

''ଏଇଟା ଗୋଟେ ସମ୍ଭାବନା । ଆମେ ତାଙ୍କୁ ହେଳା କରିପାରିବା ନାହିଁ । ଆମେ ଆଜି ତାଙ୍କୁ ଦେଖାକରିବା, ଆଉ ଦେଖିବା ସେ ଆମକୁ ଏ ବିଷୟରେ କ'ଣ କହୁଛନ୍ତି । ମୁଁ ଏ ଭିତରେ ଅନୁସନ୍ଧାନ ଆରମ୍ଭ କରିଦେଇଛି ।''

''ଆରମ୍ଭ କରିସାରିଛି ?''

''ହଁ । ଓକିଙ୍ଗରୁ ମୁଁ ଲଣ୍ଡନର ସବୁ ଖବରକାଗଜକୁ ଟେଲିଗ୍ରାମ କରିଦେଇଛି । ଏଇ ବିଜ୍ଞାପନଟା ସବୁ କାଗଜରେ ପ୍ରକାଶ ପାଇବ ।''

ସେ ମୋ ହାତକୁ ଖଣ୍ଡେ କାଗଜ ବଢ଼ାଇଦେଲେ । ସେଥିରେ ପେନ୍‌ସିଲ୍‌ରେ ଲେଖାଥିଲା, ''ଦଶ ପାଉଣ୍ଡ ପୁରସ୍କାର । ମେ ୨୩ ତାରିଖ ରାତି ଦଶଟାବେଳେ ଗୋଟେ ଘୋଡ଼ାଗାଡ଼ି ଚାର୍ଲସ ଷ୍ଟ୍ରୀଟ୍‌ରେ ବୈଦେଶିକ ବ୍ୟାପାର ଅଫିସ୍ ପାଖରେ

ଜଣେ ପାସେଞ୍ଜରକୁ ଛାଡ଼ିଥିଲା । ତାର ନମ୍ବର ଯେ ଜଣାଇବ, ସେ ୨୨୧ ବି, ବେକର୍ ଷ୍ଟ୍ରୀଟ୍‌ରେ ଜଣାଇ ପୁରସ୍କାର ନେଇଯିବ ।''

''ଆଚ୍ଛା, ଚୋର ଗୋଟେ ଘୋଡ଼ାଗାଡ଼ିରେ ଆସିଥିଲା ବୋଲି ତୁମେ ନିଶ୍ଚିତ ?''

''ନ ହେଲେ ବି କିଛି କ୍ଷତି ନାହିଁ, କିନ୍ତୁ ମିଷ୍ଟର ଫେଲ୍‌ପସ୍ ଯାହା କହିଲେ, ସେ ଘରେ ବା ବାରଣ୍ଡାରେ ଲୁଚି ରହିବା ପାଇଁ କୌଣସି ଜାଗା ନାହିଁ, ସେଟା ପୂରା ଠିକ୍ । ତେଣୁ ଲୋକଟା ନିଶ୍ଚୟ ବାହାରୁ ଆସିଥିବ । ବର୍ଷାରାତି । ଲୋକଟା ବାହାରୁ ଆସିଲା, କିନ୍ତୁ ଗାଲିଚାରେ ତାର ପାଦଚିହ୍ନ ନାହିଁ ବୋଲି ପରୀକ୍ଷାକରି ଦେଖାଗଲା । ତେଣୁ ଏଇଟା ଖୁବ୍ ସମ୍ଭବ ଯେ ସେ ଗୋଟେ ଗାଡ଼ିରେ ଆସିଥିଲା । ସେ ବିଷୟରେ ଆମେ ନିଶ୍ଚିତ ହୋଇପାରିବା ।'' ''ଏଟା ସମ୍ଭବ ପରି ଜଣାଯାଉଛି ।'' ''ମୁଁ ଯେଉଁ ସୂତ୍ରକଥା କହୁଥିଲି ସେଥିରୁ ଇଏ ହେଲା ଗୋଟେ । ଏଥିରୁ ହୁଏତ ଆମେ କିଛି ଜାଣିପାରିବା । ତା'ପରେ କଲିଂବେଲ୍‌ଟା କଥା । ସେଇଟା ହେଲା ସବୁଠୁ ଉଲ୍ଲେଖନୀୟ ଘଟଣା । ବେଲ୍‌ଟା ବାଜିଲା କାହିଁକି ? ଚୋର କ'ଣ ତା'ର ବୀରତ୍ୱ ଦେଖାଇବାକୁ ଖୁସିହୋଇ ସେଟା ବଜାଇଲା, କିମ୍ବା ଚୋର ସାଥିରେ କ'ଣ ଆଉ କେହି ଥିଲା, ଆଉ ଚୋରିଟାକୁ ରୋକିବା ପାଇଁ ସେ ବେଲ୍ ବଜାଇଲା ?''

''କିମ୍ବା - କିମ୍ବା- ?''

ସେ ପୁଣି ଗଭୀର ଚିନ୍ତାରେ ବସିଗଲେ । ଜାଣିଲି କିଛି ଗୋଟେ ନୂଆ ଚିନ୍ତା ତାଙ୍କ ମୁଣ୍ଡରେ ଢୁକିଛି ।

ଆମେ ଲକ୍ଷ୍ୟସ୍ଥଳରେ ପହଞ୍ଚିଲା ବେଳକୁ ତିନିଟା ବାଜି କୋଡ଼ିଏ ମିନିଟ୍ । ଚଞ୍ଚଳ ଚଞ୍ଚଳ ଖାଇଦେଇ ଆମେ ସାଙ୍ଗେ ସାଙ୍ଗେ ସ୍କଟ୍‌ଲାଣ୍ଡ ୟାର୍ଡ଼ ଚାଲିଲୁ । ଆଗରୁ ହୋମ୍‌ସ ଫୋରବସ୍‌ଙ୍କ ପାଖକୁ ତାର କରିଥିଲେ । ସେ ଆମକୁ ଅପେକ୍ଷାକରି ବସିଥାନ୍ତି । ତାଙ୍କ ହାବଭାବ ସେତେ ବନ୍ଧୁତ୍ୱପୂର୍ଣ୍ଣ ଜଣାଗଲା ନାହିଁ । ସେ ଥଟ୍ଟାଳିଆ ଭଙ୍ଗୀରେ କହିଲେ, ''ମୁଁ ଆପଣଙ୍କ କାର୍ଯ୍ୟପଦ୍ଧତି ବିଷୟରେ ଆଗରୁ ଶୁଣିଛି ମିଷ୍ଟର ହୋମ୍‌ସ ! ଆପଣ ପୋଲିସ୍ ପାଖରୁ ସବୁ ଖବର ସଂଗ୍ରହ କରି ତାକୁ କାମରେ ଲଗାଇବାରେ ଧୁରନ୍ଧର । ତା'ପରେ କେଶ୍‌ଟାର ଶେଷ ବେଳକୁ କିଛିଟା କାମ କରି ଦେଇ ବାହାଦୁରୀ ନେଇଯାଆନ୍ତି । ପୋଲିସ୍ ସବୁ କରି ଦୁର୍ନାମ ପାଏ ।''

ହୋମ୍ସ ଉତ୍ତର ଦେଲେ, ''ଠିକ୍ ତାର ଓଲଟା । ତେପନଟା କେଶରୁ ମୋଟେ ଚାରିଟାରେ ମୋ ନାଁ ପ୍ରକାଶ ପାଇଛି । ବାକି ଅଣଚାଶଟାରେ ପୋଲିସ୍‌ର ନାଁ ହୋଇଛି । ଆପଣ ଏକଥା ଜାଣିନାହାନ୍ତି । ସେଥିଲାଗି ମୁଁ ଆପଣଙ୍କୁ ଦୋଷ ଦେଉନାହିଁ । କାରଣ ଆପଣ ଯୁବକ, ଆଉ ଆପଣଙ୍କର ଅନୁଭୂତି ନାହିଁ; କିନ୍ତୁ ଆପଣ ଯଦି କାମରେ ସଫଳ ହେବାକୁ ଚାହାନ୍ତି, ତେବେ ମୋ ସାଥିରେ କାମ କରନ୍ତୁ ମୋ ବିରୁଦ୍ଧରେ ନୁହେଁ ।''

ଡିଟେକ୍‌ଟିଭ୍‌ଙ୍କ ମୁହଁର ଭାବ ବଦଳିଗଲା । ସେ କହିଲେ, ''ମୁଁ ଖୁସିରେ ଆପଣଙ୍କୁ ଗୋଟେ ଦି'ଟା ସୂଚନା ଦେବି ।''

''ଆପଣ କି କି ପଦକ୍ଷେପ ନେଇଛନ୍ତି ?''

''ଜଗୁଆଳି ଟାଙ୍ଗେ ଉପରେ ବରାବର ନଜର ରଖାଯାଇଛି । କୋଲ୍‌ଡ୍ ଷ୍ଟ୍ରୀମ ଗାର୍ଡ୍ ବାହିନୀରୁ ବୁଝିଲି ତା ଚରିତ୍ର ଖୁବ୍ ଭଲ । ତା' ବିରୁଦ୍ଧରେ କିଛି ନାହିଁ । ତା' ସ୍ତ୍ରୀ କିନ୍ତୁ ସେତେ ଭଲ ଲୋକ ନୁହେଁ । ମୋର ଧାରଣା ସେ ଏ ବିଷୟରେ ବେଶି କିଛି ଜାଣେ ।'' ''ତା ଉପରେ ନଜର ରଖିଛ ?''

''ହଁ, ଆମର ଜଣେ ନାରୀ ପୋଲିସ୍ ତା' ପିଛା ଲାଗିଥିଲେ । ମିସେସ୍ ଟାଙ୍ଗେ ମଦ ଖାଆନ୍ତି । ସେ ମଦ ଖାଇଥିବା ବେଳେ ଆମ ମହିଳା ପୋଲିସ୍ ଦି'ଥର ତାଙ୍କ ପାଖକୁ ଯାଇଛନ୍ତି, କିନ୍ତୁ ତାଙ୍କଠୁ କିଛି ସୂଚନା ମିଳିଲା ନାହିଁ ।''

''ଶୁଣିଲି ବାକି ପଇସା ଅସୁଲ କରିବାକୁ ଦୋକାନୀ ତାଙ୍କ ଘରକୁ ଯାଇଥିଲେ ।''

''ହଁ, ସେମାନେ ତାଙ୍କ ପଇସା ପାଇଯାଇଛନ୍ତି ।''

''ସେ ପଇସା କେଉଁଠୁ ଆସିଲା ?''

''ସେ ଠିକ୍ ଅଛି । ମିଷ୍ଟର ଟାଙ୍ଗେ ତାଙ୍କ ପେନ୍‌ସନ୍ ପାଇବାର ଥିଲା ।''

''ମିଷ୍ଟରେ ଫେଲ୍‌ପସ୍ ଯେତେବେଳେ କଫି ପାଇଁ ବେଲ୍ ବଜାଇଲେ ମିସେସ୍ ଟାଙ୍ଗେ କାହିଁକି ଗଲେ ?''

''ସେ କହନ୍ତି ଯେ ତାଙ୍କ ସ୍ୱାମୀ କ୍ଳାନ୍ତ ହୋଇପଡ଼ିଥିଲେ । ତେଣୁ ତାଙ୍କୁ ସାହାଯ୍ୟ କରିବା ପାଇଁ ସେ ଯାଇଥିଲେ ।''

''ହଁ, ତା' ସତ ହୋଇପାରେ । କାରଣ ତା' ପରେ ପରେ ମିଷ୍ଟର ଟାଙ୍ଗେ ଚଉକି ଉପରେ ଶୋଇପଡ଼ିଥିବାର ଦେଖାଗଲା । ସେମାନଙ୍କ ବିରୁଦ୍ଧରେ କିଛି

ନାହିଁ, କେବଳ ସେ ମହିଳାଙ୍କ ଚରିତ୍ର । ସେ ରାତ୍ରିରେ ସେ କାହିଁକି ତରତର ହୋଇ ପଳାଉଥିଲେ ବୋଲି ତାଙ୍କୁ ପଚାରିଥିଲେ ? ପୋଲିସ୍ କନଷ୍ଟେବଳ ତାଙ୍କୁ ଦେଖିଛି ।''

''ସବୁଦିନ ଅପେକ୍ଷା ଡେରି ହୋଇଯାଇଥିବାରୁ ସେ ଘରକୁ ଯିବାକୁ ତରତର ହେଉଥିଲେ ।''

''ଆପଣ ଆଉ ମିଷ୍ଟର ଫେଲ୍‌ପସ୍ ତାଙ୍କର କୋଡ଼ିଏ ମିନିଟ୍ ପଛରେ ଗଲେ, ଅଥଚ ତାଙ୍କ ଆଗରୁ ଘରେ ପହଞ୍ଚିଲେ । ଏ କଥା ତାଙ୍କୁ ପଚାରିଥିଲେ ?''

''ହଁ, ସେ କହିଲେ ଗୋଟେ ଘୋଡ଼ାଗାଡ଼ି ଆଉ ଗୋଟେ ବସ୍ ମଧ୍ୟରେ ତଫାତ୍ ଅଛି ।''

''ଘରେ ପହଞ୍ଚିଲା ପରେ ସେ ପଛପାଖ ରୋଷେଇଘରକୁ କାହିଁକି ଦୌଡ଼ି ପଳାଇଲେ, ତା'ର କ'ଣ ଜବାବ ଦେଲେ ?''

''ସେ ଭାବିଲେ ଦୋକାନୀମାନେ ଆସି ବସିଛନ୍ତି । ତାଙ୍କୁ ଦେବାପାଇଁ ସେ ରୋଷେଇଘରେ ପଇସା ରଖିଥିଲେ ।''

''ପ୍ରତ୍ୟେକ ପ୍ରଶ୍ନର ସେ କିଛି ନା କିଛି ସନ୍ତୋଷଜନକ ଜବାବ ଦେଇଛନ୍ତି । ସେ ଅଫିସ୍ ପାଖରୁ ଆସିଲାବେଳେ ଚାର୍ଲସ ଷ୍ଟ୍ରୀଟ୍‌ରେ ଅନ୍ୟ କୌଣସି ଲୋକକୁ ଦେଖିଥିଲେ କି ନାହିଁ ପଚାରିଥିଲେ ?''

''କନଷ୍ଟେବଲ ବ୍ୟତୀତ ଅନ୍ୟ କାହାକୁ ସେ ଦେଖିନାହାନ୍ତି ।''

''ତାଙ୍କୁ ଯାହା କିଛି ପଚାରିବା କଥା ଆପଣ ପଚାରିସାରିଛନ୍ତି । ଆଉ କ'ଣ କରିଛନ୍ତି ?''

''ଗୋରୋଟ୍ ଉପରେ ବି ନଜର ରଖାଯାଇଛି । କିନ୍ତୁ କିଛି ଫଳ ହୋଇନାହିଁ । ତାଙ୍କ ବିରୁଦ୍ଧରେ କିଛି ପ୍ରମାଣ ନାହିଁ ।''

''ଆଉ କିଛି ?''

''ନା, ଆଉ କିଛି ପ୍ରମାଣ ଆମେ ପାଇପାରି ନାହୁଁ ।''

''ଆଚ୍ଛା, ମିଷ୍ଟର ଫେଲ୍‌ପସ୍ ଜଗୁଆଳି ପାଖରେ ଥିବାବେଳେ ତାଙ୍କ ରୁମ୍‌ର ବେଲ୍‌ଟା କେମିତି ବାଜିଲା, ସେ ବିଷୟରେ ଆପଣ କିଛି ଠିକ୍ କରିଛନ୍ତି ?''

''ସତ କହୁଛି, ସେ ବିଷୟରେ ମୁଁ କିଛି ଭାବିପାରୁ ନାହିଁ । ବେଲ୍‌ଟା ଯେ ବଜାଇଲା ସେ ନିଶ୍ଚୟ ଏକ ବିଚିତ୍ର ଲୋକ ।''

''ହଁ, ସେ ଘଟଣାଟା ଖୁବ୍ ଅସାଧାରଣ । ଆପଣ ଆମକୁ ଗୁଡ଼ାଏ କଥା କହିଲେ । ସେଥିପାଇଁ ଅଶେଷ ଧନ୍ୟବାଦ । ଯଦି ଲୋକଟାକୁ ମୁଁ ଧରିପାରେ, ତା' ହେଲେ ଆପଣଙ୍କୁ ନିଶ୍ଚୟ ଜଣାଇବି । ଆସ ୱାଟ୍‌ସନ୍ !''

ଆମେ ଅଫିସ୍‌ରୁ ବାହାରି ଆସିବା ପରେ ପଚାରିଲି, ''ଏଥର କୁଆଡ଼େ ଯିବା ?''

''ବର୍ତ୍ତମାନ ମନ୍ତ୍ରୀ ଏବଂ ଭବିଷ୍ୟତର ପ୍ରଧାନମନ୍ତ୍ରୀ ଲର୍ଡ଼ ହୋଲ୍‌ଡ଼ ହର୍‌ଷ୍ଟଙ୍କ ସଙ୍ଗେ ସାକ୍ଷାତ କରିବାକୁ ଯିବା ।''

ସୁଯୋଗକୁ ଲର୍ଡ଼ ହୋଲ୍‌ଡ଼ ହରଷ୍ଟ ଡାଉନିଙ୍ଗ ଷ୍ଟ୍ରୀଟ୍‌ରେ ତାଙ୍କ ଚେମ୍ବରରେ ଥିଲେ । ହୋମ୍‌ସ ତାଙ୍କ କାର୍ଡ଼ ପଠାଇଲା ମାତ୍ରେ ଆମକୁ ଭିତରକୁ ଡକାଗଲା । ଏଇ ପ୍ରବୀଣ ରାଜନୀତିଜ୍ଞ ଆମକୁ ବେଶ୍ ଭଦ୍ରତାର ସହ ସ୍ୱାଗତ କଲେ । ନିଆଁ ଦି' ପାଖରେ ଦି'ଟା ଇଜି ଚେୟାର୍‌ରେ ଆମେ ବସିଲୁ । ସେ ମଝିରେ ଗାଲିଚା ଉପରେ ଠିଆ ହୋଇଥାନ୍ତି । ସେ ଟିକିଏ ଡେଙ୍ଗା ଲୋକ । ମୁଣ୍ଡର କୁଞ୍ଚୁକୁଞ୍ଚିଆ ବାଳ ସାମାନ୍ୟ ଧଳା ହୋଇଆସିଲାଣି । ଚିନ୍ତାଶୀଳ ମୁହଁ । ମୋଟ ଉପରେ ସେ ଜଣେ ପ୍ରକୃତ ସମ୍ଭ୍ରାନ୍ତ ଲୋକ ପରି ଜଣାଯାଉଥିଲେ । ଅଳ୍ପ ହସି ସେ କହିଲେ, ''ମୁଁ ଆପଣଙ୍କ ନାଁ ସହିତ ବେଶ୍ ପରିଚିତ ମିଷ୍ଟର ହୋମ୍‌ସ ! ଆପଣ କାହିଁକି ଏଠିକି ଆସିଛନ୍ତି ତା' ମୁଁ ଜାଣେ ନାହିଁ ବୋଲି ଛଳନା କରିବା ମୋର ଇଚ୍ଛା ନୁହେଁ । ଆମ ଅଫିସ୍‌ରେ କେବଳ ଗୋଟିଏ ଘଟଣା ଘଟିଛି, ଯେଉଁଥିରେ ଆପଣ ଆଗ୍ରହୀ ହୋଇପାରନ୍ତି । ମୋତେ କହନ୍ତୁ, ଆପଣ ଏ ଘଟଣାରେ କାହାପାଇଁ କାମ କରୁଛନ୍ତି ?''

''ମିଷ୍ଟର ପର୍‌ସି ଫେଲ୍‌ପସ୍‌ଙ୍କ ପାଇଁ ।''

''ଆହା ! ମୋ ହତଭାଗା ଭଣଜା ବିଚରା । ଆପଣ ବୁଝିପାରୁଥିବେ ଆମର ଏ ସମ୍ବନ୍ଧ ଯୋଗୁଁ ତାକୁ ଘୋଡ଼େଇନେବା ମୋ ପକ୍ଷରେ ଅସମ୍ଭବ । ତା'ର ଭବିଷ୍ୟତ ଉପରେ ଏ ଘଟଣାର ପ୍ରଭାବ ନିଶ୍ଚୟ ପଡ଼ିବ ବୋଲି ମୋର ସନ୍ଦେହ ।''

''କିନ୍ତୁ ସେ ଦଲିଲ୍‌ଟା ଯଦି ମିଳିଯାଏ ?''

''ତା'ହେଲେ ଜିନିଷଟା ଅଲଗା ହୋଇଯିବ ।''

''ଆପଣଙ୍କୁ ମୋର ଗୋଟେ ଦି'ଟା ପ୍ରଶ୍ନ ପଚାରିବାର ଥିଲା, ଲର୍ଡ଼ ହୋଲଡ଼୍ ହର୍ଷ୍ଟ ।''

''ମୋ ଦ୍ୱାରା ଯାହା ସମ୍ଭବ ସେ ଖବର ଦେବାକୁ ମୁଁ ଖୁସିରେ ରାଜି ଅଛି ।''

''ଆପଣ ସେ ଦଲିଲ୍‌ଟା କପି କରିବା ପାଇଁ ଯେଉଁ ନିର୍ଦ୍ଦେଶ ଦେଲେ, ତା' କ'ଣ ଏଇ ରୁମ୍‌ରେ ?''

''ହଁ, ଏଇ ରୁମ୍‌ରେ ?

''ତା' ହେଲେ ତ ଆପଣଙ୍କ କଥା ବାହାରୁ କେହି ଶୁଣିପାରି ନଥିବେ ?''

''ତା'ର ପ୍ରଶ୍ନ ଉଠୁ ନାହିଁ ।''

''ସେଟା କପି କରିବାକୁ ଦେବା ଆପଣଙ୍କ ଉଦ୍ଦେଶ୍ୟ ବୋଲି କେବେ କାହାକୁ କହିଥିଲେ ?''

''ମୋଟେ ନୁହେଁ ।''

''ଆପଣ ସେ ବିଷୟରେ ନିଶ୍ଚିତ ?''

''ହଁ, ପୂରା ନିଶ୍ଚିତ ।''

''ତେବେ ଦେଖନ୍ତୁ । ଆପଣ କାହା ଆଗେ ଏ କଥା କହିନାହାନ୍ତି । ମିଷ୍ଟର ଫେଲ୍‌ପସ୍‌ବି କାହାରି ଆଗରେ କହିନାହାନ୍ତି । ତେଣୁ ଚୋର ଦୈବାତ୍ ସେ ଘରକୁ ପଶିଯାଇଛି । ଲେଖାଟା ଦେଖି ତାକୁ ଗୋଟେ ସୁଯୋଗ ମିଳିଯାଇଛି, ଆଉ ସେ ସେଟା ନେଇଯାଇଛି ।''

ହସି ହସି ଲର୍ଡ଼ ହୋଲ୍‌ଡ଼ ହର୍ଷ୍ଟ କହିଲେ, ''ଆପଣଙ୍କର ଉଦ୍ଦେଶ୍ୟ କ'ଣ ମୁଁ କିଛି ବୁଝିପାରୁ ନାହିଁ ।''

ହୋମ୍‌ସ ଟିକିଏ ଚିନ୍ତାକରି କହିଲେ, ''ଆଉ ଗୋଟେ ଖୁବ୍ ଗୁରୁତ୍ୱପୂର୍ଣ୍ଣ ପଏଣ୍ଟ ବିଷୟରେ ମୁଁ ଆପଣଙ୍କ ସାଥିରେ ଆଲୋଚନା କରିବାକୁ ଚାହେଁ । ଏଇ ଦଲିଲ୍‌ଟାର ବିବରଣୀ ବାହାରେ ପ୍ରକାଶ ପାଇଗଲେ ତାର ଫଳ ଖୁବ୍ ସାଂଘାତିକ ହେବ ବୋଲି ଆପଣଙ୍କର ଭୟ ଥିଲା ?''

ଲର୍ଡ଼ ହୋଲ୍‌ଡ଼ ହର୍ଷ୍ଟଙ୍କ ମୁହଁରେ ଚିନ୍ତାର ରେଖା ଦେଖାଗଲା । ସେ କହିଲେ, ''ହଁ, ଖୁବ୍ ସାଂଘାତିକ ଫଳ ।''

''ସେଭଳି କିଛି ଘଟିଲାଣି ?''

''ନା, ଏ ଯାଏ ଘଟି ନାହିଁ ।''

''ମନେ କରନ୍ତୁ ଏ ଦଲିଲଟା ଫ୍ରାନ୍‌ସ କିମ୍ବା ରୁଷିଆର ବୈଦେଶିକ ଅଫିସ୍‌ରେ ପହଞ୍ଚିଥାଆନ୍ତା । ଆପଣ ତ ସେ ବିଷୟରେ ନିଶ୍ଚୟ ଖବର ପାଇଥାନ୍ତେ ?''

ମୁହଁକୁ ଟିକିଏ ବିକୃତ କରି ଲର୍ଡ଼ ହୋଲ୍‌ଡ଼ ହର୍‌ଷ୍ଟ କହିଲେ, ''ହଁ, ମୁଁ ନିଶ୍ଚୟ କିଛି ଶୁଣିଥାନ୍ତି ।''

''ସେଦିନଠୁ ଦଶ ସପ୍ତାହ ବିତିଗଲାଣି । ଅଥଚ ଏ ଯାଏ କିଛି ଶୁଣାଯାଇ ନାହିଁ । ତେଣୁ କୌଣସି କାରଣରୁ ଦଲିଲଟା ସେଠି ପହଞ୍ଚିପାରିନାହିଁ ବୋଲି ଭାବିବାଟା ମେଟେ ଅସଙ୍ଗତ ନୁହେଁ । ଚୋର ଦଲିଲଟା ଫ୍ରେମ୍‌ରେ ବାନ୍ଧି ଘରେ ରଖିବା ପାଇଁ ନେଇଛି ବୋଲି ତ ଆମେ ଭାବିବା ନାହିଁ ।''

''ସେ ବୋଧହୁଏ ଅଧିକ ପଇସା ପାଇବା ପାଇଁ ଅପେକ୍ଷା କରିଛି ।''

''ସେ ଯଦି ଆଉ କିଛିଦିନ ଅପେକ୍ଷା କରେ ତେବେ କିଛି ପାଇବ ନାହିଁ । ଆଉ କେତେ ମାସ ପରେ ସେ ଦଲିଲ୍‌ର କିଛି ମୂଲ୍ୟ ରହିବ ନାହିଁ । ଏଟା ହେଲା ଅତି ଗୁରୁତ୍ୱପୂର୍ଣ୍ଣ କଥା । ଅବଶ୍ୟ ଯା କଳ୍ପନା କରାଯାଇପାରେ ଯେ ଚୋର ହଠାତ୍ ବେମାର ପଡ଼ିଯାଇଥିବ ।''

''ହଁ, ଉଦାହରଣ ସ୍ୱରୂପ ମାନସିକ ଜ୍ୱର ।''

ଅତି ଶାନ୍ତଭାବରେ ହୋମ୍‌ସ କହିଲେ, ''ମୁଁ ତ ସେକଥା କହିନାହିଁ । ହଉ ଆଜ୍ଞା, ଆମେ ଆପଣଙ୍କ ମୂଲ୍ୟବାନ ସମୟ ଅନେକ ନଷ୍ଟ କଲୁଣି । ଏଥର ଆମକୁ ବିଦାୟ ଦିଅନ୍ତୁ ।''

ଆମକୁ ଘର ଦରଜା ପାଖେ ଛାଡ଼ିଦେଇ ଲର୍ଡ଼ ହୋଲଡ୍ ହର୍‌ଷ୍ଟ କହିଲେ, ''ଅପରାଧୀ ଯେ ହେଉନା କାହିଁକି, ଆପଣଙ୍କ ଅନୁସନ୍ଧାନ ସଫଳ ହେଉ ।''

ଆମେ ହ୍ୱାଇଟ୍ ହଲ୍ ରାସ୍ତାକୁ ଆସିଲା ପରେ ହୋମ୍‌ସ କହିଲେ, ''ବେଶ୍ ସୁନ୍ଦର ଲୋକ । କିନ୍ତୁ ନିଜର ମାନ-ସମ୍ମାନ ରକ୍ଷା କରିବା ପାଇଁ ତାଙ୍କ ମନ ଭିତରେ ଦ୍ୱନ୍ଦ୍ୱ ଚାଲିଛି । ସେ ବିଶେଷ ଧନୀ ନୁହନ୍ତି । ତୁମେ ଅନୁମାନ କରିଥିବ ତାଙ୍କ ଜୋତା ତାଳି ପଡ଼ି ମରାମତି ହୋଇଛି । ହଁ ୱାଟ୍‌ସନ୍, ତୁମ ବ୍ୟବସାୟଗତ କାମରୁ ମୁଁ ତୁମକୁ ଆଉ ଅଟକାଇବି ନାହିଁ । ମୋ ବିଜ୍ଞାପନର ଉତ୍ତର ନ

ଆସିବାଯାଏ ଆଜି ମୁଁ ଆଉ କିଛି କରିବି ନାହିଁ । କିନ୍ତୁ ଆଜି ଯେଉଁ ଟ୍ରେନ୍‌ରେ ଆମେ ଓକିଙ୍ଗ ଆସିଲେ, କାଲି ସେଇ ଟ୍ରେନ୍‌ରେ ମୋ ସାଥିରେ ଓକିଙ୍ଗ ଆସିଲେ ମୁଁ ବଡ଼ ଉପକୃତ ହେବି ।''

ସେଇ ଅନୁସାରେ ତା' ଆରଦିନ ସକାଳେ ମୁଁ ତାଙ୍କ ପାଖକୁ ଗଲି, ଆଉ ଆମେ ଓକିଙ୍ଗ ଚାଲିଲୁ । ତାଙ୍କ ବିଜ୍ଞାପନର କିଛି ଉତ୍ତର ମିଳିଲା ନାହିଁ ବୋଲି କହିଲେ । କେଶ୍ ବିଷୟରେ ବି ଆଉ କିଛି ତଥ୍ୟ ମିଳି ନଥାଏ । ହୋମ୍‌ସ ଯେତେବେଳେ ଚାହାନ୍ତି ଲୋହିତ ଭାରତୀୟଙ୍କ ପରି ନିଶ୍ଚଳ ହୋଇଯାନ୍ତି । କେଶ୍‌ର ଅବସ୍ଥାରେ ସେ ସନ୍ତୁଷ୍ଟ କି ନାହିଁ ତାଙ୍କ ମୁହଁରୁ ଜାଣି ପାରିଲିନାହିଁ । ସେ ଫ୍ରାନ୍‌ସର ବିଦ୍ୱାନ୍ ଲୋକଙ୍କ ପ୍ରତି ତାଙ୍କର ଶ୍ରଦ୍ଧା ଆଉ ଅନ୍ୟ ବିଷୟରେ କଥାବାର୍ତ୍ତା ଆରମ୍ଭ କରିଦେଲେ ।

ଓକିଙ୍ଗରେ ପହଞ୍ଚି ଦେଖିଲୁ ଫେଲ୍‌ପସ୍ ନର୍ସର ସେବାରେ ଅଛି । କିନ୍ତୁ ସେ ପୂର୍ବ ଅପେକ୍ଷା ଭଲ ଥିଲା ପରି ଦେଖାଯାଉଥିଲା । ଆମକୁ ଦେଖି ସେ ବିନା କଷ୍ଟରେ ଉଠି ବସି ସ୍ୱାଗତ କଲା । ବ୍ୟଗ୍ର ହୋଇ ପଚାରିଲା, ''କିଛି ଖବର ଅଛି ?''

ହୋମ୍‌ସ ଉତ୍ତର ଦେଲେ, 'ନା । ମୁଁ ଯାହା ଆଶା କରିଥିଲି ସେଇଆ । ମୁଁ ମିଷ୍ଟର ଫୋର୍‌ବସ୍‌ଙ୍କ ପାଖକୁ ଯାଇଥିଲି, ଆପଣଙ୍କ ମାମୁଙ୍କ ପାଖକୁ ବି । ତା' ଛଡ଼ା ମୁଁ ଆଉ ଗୋଟେ ଦି'ଟା ଅନୁସନ୍ଧାନ ଆରମ୍ଭ କରିଛି । ସେଥିରୁ କିଛି ଫଳ ମିଳିଯାଇପାରେ ।'

'ଆପଣ ତା' ହେଲେ ଆଶା ଛାଡ଼ିନାହାନ୍ତି ?'

'ମୋଟେ ନୁହେଁ ।'

'ଭଗବାନ୍ ଆପଣଙ୍କର ମଙ୍ଗଳ କରନ୍ତୁ ।' ମିସ୍ ହାରିସନ୍ କହିଲେ । 'ଆମେ ସାହସ ଆଉ ଧୈର୍ଯ୍ୟ ଧରିଲେ ସତକଥା ନିଶ୍ଚୟ ବାହାରିବ ।'

ଫେଲ୍‌ପସ୍ ଖଟ ଉପରେ ସଳଖି ବସି କହିଲେ, ''ଆପଣ ଆମକୁ ଯାହା ଖବରଦେବେ ଆମେ ଆପଣଙ୍କୁ ତା'ଠୁ ବେଶୀ ଖବର ଦେବୁ ।''

'ମୁଁ ମଧ୍ୟ ସେଇଆ ଆଶା କରିଥିଲି ।'

''ହଁ, କାଲି ରାତିରେ ଏଠି ଗୋଟେ ଦୁଃସାହସିକ ଘଟଣା ଘଟିଗଲା । ସେଟା ହୁଏତ ଅତି ସାଂଘାତିକ ହୋଇଯାଇଥାନ୍ତା ।'' ତା ମୁହଁର ଭଙ୍ଗୀ ଖୁବ୍ ଗମ୍ଭୀର

ହୋଇଗଲା । ଆଖିରେ ଭୟର ଚାହାଣି । ସେ ପୁଣି କହିଲା, ''ଜାଣନ୍ତି, ମୁଁ ଏବେ ଭାବୁଛି, ମୁଁ ଗୋଟେ ମାରାତ୍ମକ ଚକ୍ରାନ୍ତରେ ପଡ଼ିଯାଇଛି । ମୋର ମାନ ସମ୍ମାନ ସାଥିରେ ମୋର ଜୀବନ ନଷ୍ଟ କରିଦେବାର ଯୋଜନା ଚାଲିଛି ।''

'ସତେ ?' ହୋମ୍ସ କହିଉଠିଲେ ।

'ଏଟା କେହି ବିଶ୍ୱାସ କରି ନ ପାରନ୍ତି । କାରଣ ମୋ ଜାଣିବାରେ ଏ ଦୁନିଆଁରେ ମୋର କେହି ଶତ୍ରୁ ନାହାନ୍ତି । କିନ୍ତୁ କାଲି ରାତିର ଅନୁଭୂତି ପରେ ମୁଁ ଆଉ କିଛି ଭାବିପାରୁନାହିଁ ।'

''ଦୟାକରି ଘଟଣାଟା କହନ୍ତୁ ?''

''ପ୍ରଥମେ ଜାଣିରଖନ୍ତୁ ଯେ କାଲି ରାତି ହେଲା ପ୍ରଥମ ରାତି, ଯେଉଁ ରାତିରେ ମୁଁ ଏକା ମୋ ରୁମ୍‌ରେ ଶୋଇଥିଲି । ପାଖରେ କେହି ନର୍ସ ନ ଥିଲେ । ମୋ ଦେହ ଏତେ ଭଲ ଲାଗିଲା ଯେ ଭାବିଲି କେହି ପାଖରେ ରହିବା ଦର୍କାର ନାହିଁ । ଘର ଭିତରେ କିନ୍ତୁ ଗୋଟେ ଆଲୁଅ ଜଳୁଥିଲା । ପ୍ରାୟ ଦୁଇଟା ବେଳକୁ ମୁଁ ସାମାନ୍ୟ ନିଦରେ ଶୋଇପଡ଼ିଲି । ହଠାତ୍ ଗୋଟେ ଶବ୍ଦରେ ମୋ ନିଦ ଭାଙ୍ଗିଗଲା । ମୂଷା ଗୋଟେ ପଟା ଦାନ୍ତରେ କାଟିଲା ପରି ଶବ୍ଦ । ଭାବିଲି ମୂଷା କେଉଁଠି କିଛି କାଟୁଥିବ । କେତେବେଳ ଯାଏ ଶବ୍ଦଟାକୁ କାନେଇ ପଡ଼ିରହିଲି । ତା'ପରେ ଶବ୍ଦଟା ବଢ଼ିଲା । ହଠାତ୍ ଝରକାରୁ କୌଣସି ଧାତୁର ଠଣ୍‌ଠଣ୍ ଶବ୍ଦ ଆସିଲା । ଆଶ୍ଚର୍ଯ୍ୟ ହୋଇ ମୁଁ ଖଟ ଉପରେ ବସିପଡ଼ିଲି । ଏଥର ଶବ୍ଦଟା କ'ଣ ଜାଣିବାରେ ମୋର ସନ୍ଦେହ ରହିଲା ନାହିଁ । ପ୍ରଥମଟା ଝରକାର ସରୁ ଫାଙ୍କବାଟେ କୌଣସି ଅସ୍ତ୍ର (ହତିଆର) ପୂରାଇବା ଶବ୍ଦ, ଆଉ ଦ୍ୱିତୀୟଟା ଝରକା ଖିଡ଼ିକି ପଛକୁ ପେଲିବା ଶବ୍ଦ । ତା'ପରେ ପ୍ରାୟ ଦଶମିନିଟ୍ ଯାଏ ସବୁ ଚୁପ୍‌ଚାପ୍ । ଏ ଶବ୍ଦରେ ମୋ ନିଦ ଭାଙ୍ଗିଛି କି ନାହିଁ ଦେଖିବା ପାଇଁ ଲୋକଟା ବୋଧହୁଏ ଅପେକ୍ଷା କଲା । ତା'ପରେ ଖୁବ୍ ଆସ୍ତେ କେଁ କେଁ ଶବ୍ଦ ଶୁଣିଲି ଆଉ ଝରକାଟା ଖୁବ୍ ଧୀରେ ଧୀରେ ଖୋଲିଗଲା । ମୁଁ ଆଉ ସମ୍ଭାଳିପାରିଲି ନାହିଁ । ଖଟ ଉପରୁ ଡେଇଁ ପଡ଼ି ଝରକାର କବାଟଗୁଡ଼ା ପୂରା ଖୋଲିଦେଲି । ଝରକା ପାଖେ ଗୋଟେ ଲୋକ ଲଇଁ ପଡ଼ିଥିଲା । ମୁଁ ତାକୁ ଭଲ ରକମ ଦେଖିପାରିଲି ନାହିଁ । ସେ ବିଜୁଳି ପରି କୁଆଡ଼େ ଚାଲିଗଲା । ସେ ଗୋଟେ ଲମ୍ବା ଜାମା ପିନ୍ଧିଥିଲା, ଆଉ ସେଥିରେ ତା ମୁହଁଟା ଢାଙ୍କି ହୋଇଯାଇଥିଲା ।

ଗୋଟେ ବିଷୟରେ କିନ୍ତୁ ମୁଁ ନିଶ୍ଚିତ । ସେଟା ହେଲା ସେ ହାତରେ ଗୋଟେ ଅସ୍ତ୍ର ଧରିଥିଲା । ସେଇଟା ଗୋଟେ ଲମ୍ବା ଛୁରୀ ପରି ମୋତେ ଜଣାଗଲା । ଲୋକଟା ଦୌଡ଼ି ପଳାଇବାକୁ ବୁଲିଲାବେଳେ ମୁଁ ଦେଖିଛି ତାହା ଚକ୍‌ଚକ୍ କରୁଥିଲା ।

''ଏଇଟା ତ ବେଶ୍ କୌତୂହଳପୂର୍ଣ୍ଣ ଘଟଣା ! ତା'ପରେ ଆପଣ କ'ଣ କଲେ ?'

'ମୋର ବଳ ଥିଲେ ତା'ପଛେ ପଛେ ଗୋଡ଼େଇଥାନ୍ତି । ମୁଁ ବେଲ୍‌ଟା ବଜାଇ ଘରର ସମସ୍ତଙ୍କୁ ଉଠାଇଦେଲି । ସେଥିପାଇଁ ଟିକିଏ ସମୟ ଲାଗିଲା, କାରଣ ବେଲ୍‌ଟା ତଳେ ରୋଷେଇଘରେ, କିନ୍ତୁ ଚାକରବାକର ସବୁ ଉପର ମହଲାରେ ଶୁଅନ୍ତି । ମୁଁ ପାଟିକରିଉଠିଲି । ପାଟି ଶୁଣି ଜୋସେଫ୍ ତଳକୁ ଧାଇଁଆସିଲେ । ସେ ଅନ୍ୟମାନଙ୍କୁ ଉଠାଇଲେ । ଜୋସେଫ୍ ଆଉ ଘୋଡ଼ାସଇସ ଝରକା ପାଖେ ଫୁଲତଳାରେ ଚିହ୍ନ ଦେଖିଲେ । କିନ୍ତୁ ପାଗ ପୂରା ଶୁଖିଲା ଥିଲା, ତେଣୁ ସେମାନେ ସେ ଚିହ୍ନକୁ ଅନୁସରଣ କରିବା ସମ୍ଭବ ହେଲା ନାହିଁ । ରାସ୍ତାକଡ଼ରେ କିନ୍ତୁ ଗୋଟେ ବାଡ଼ ଅଛି । ସେମାନେ କହିଲେ କେହି ଜଣେ ସେଟା ଡେଇଁ ଚାଲିଯାଇଛି । ତା' ଫଳରେ ବାଡ଼ ଉପରେ ଥିବା ଛଡ଼ ବାଙ୍କିଯାଇଛି । ମୁଁ ପୋଲିସ୍‌କୁ ଏ ବିଷୟରେ କିଛି କହିନାହିଁ । କାରଣ ମୁଁ ଭାବିଲି ପ୍ରଥମେ ଆପଣଙ୍କ ମତ ନେବି ।''

ଫେଲ୍‌ପସ୍‌ର ଏକଥା ହୋମ୍‌ସଙ୍କ ଉପରେ ଅସାଧାରଣ ପ୍ରଭାବ ପକାଇଲା ପରି ଜଣାଗଲା । ସେ ଚଉକିରୁ ଉଠିପଡ଼ି ଖୁବ୍ ଉତ୍ତେଜିତ ଭାବରେ ଘର ଭିତରେ ଏପଟ ସେପଟ ହେଲେ ।

''ଦୁର୍ଭାଗ୍ୟ କେବେ ଏକା ଏକା ଆସେ ନାହିଁ ।'' - ଟିକିଏ ହସି ଫେଲ୍‌ପସ୍ କହିଲା, କିନ୍ତୁ ଗଲା ରାତ୍ରିର ଘଟଣାରେ ସେ ଖୁବ୍ ଡରିଯାଇଥିବା ପରି ଜଣାଯାଉଥାଏ ।

ହୋମ୍‌ସ କହିଲେ, ''ଆପଣ ମୋ ସାଥିରେ ଏ ଘର ଚାରିପାଖେ ଟିକିଏ ବୁଲିବାକୁ ଯାଇପାରିବେ ?''

''ନିଶ୍ଚୟ ! ବାହାରେ ସୂର୍ଯ୍ୟକିରଣରେ ଟିକିଏ ବୁଲିବାକୁ ମନହେଉଛି । ଜୋସେଫ୍ ମଧ୍ୟ ଆମ ସାଥିରେ ଯିବେ ।''

ମିସ୍ ହାରିସନ୍ କହିଲେ, ''ମୁଁ ଯିବି ।''

ମୁଣ୍ଡ ହଲାଇ ହୋମ୍ସ କହିଲେ, 'କ୍ଷମା କରିବେ । ଆପଣ ଯେଉଁଠି ବସିଛନ୍ତି ଠିକ୍ ସେଇଠି ବସି ରହିବାକୁ ମୁଁ ଆପଣଙ୍କୁ ଉପଦେଶ ଦେଉଛି ।'

ତରୁଣୀ ହାରିସନ୍ ଅସନ୍ତୁଷ୍ଟ ହୋଇ ତାଙ୍କ ଜାଗାରେ ପୁଣି ବସିପଡ଼ିଲେ । ତାଙ୍କ ଭାଇ କିନ୍ତୁ ଆମ ସାଥିରେ ଯୋଗଦେଲେ, ଆଉ ଆମେ ଚାରିଜଣ ବାହାରିଲୁ । ଆମେ ପଡ଼ିଆ ପାରିହୋଇ ଝରକା ପଛ ପାଖକୁ ଗଲୁ । ଫୁଲତଳା ଉପରେ ଚିହ୍ନ ଥିଲା, କିନ୍ତୁ ସେ ଗୁଡ଼ା ବିଲିବିଲା ହୋଇଯାଇଥିଲା, ଆଉ ସେଥିରୁ କିଛି ଜଣାଯାଉନଥିଲା । ହୋମ୍ସ ସେଗୁଡ଼ା ଦେଖିବାକୁ ଟିକିଏ ଲଇଁ ପଡ଼ିଲେ । ପରେ ମୁଣ୍ଡ ହଲାଇ ଉଠି ଠିଆହେଲେ ।

କହିଲେ, ''ଏଥିରୁ କେହି କିଛି ଜାଣିପାରିବ ବୋଲି ମୁଁ ଭାବୁନାହିଁ । ଚାଲ, ଘର ଚାରିପାଖେ ବୁଲିଆସିବା । ଦେଖିବା ଡକାୟତ ଏଇ ଘରଟାକୁ କାହିଁକି ଲକ୍ଷ୍ୟ କଲା । ମୁଁ ତ ଭାବୁଛି ସେହି ବଡ଼ ବଡ଼ ଝରକା ଥିବା ଡ୍ରଇଁରୁମ୍, ଖାଇବାଘର ଆଡ଼କୁ ସେ ଆକୃଷ୍ଟ ହେବା କଥା ।''

ଜୋସେଫ୍ ହାରିସନ୍ କହିଲେ, ''ସେଗୁଡ଼ା ରାସ୍ତାକୁ ପରିଷ୍କାର ଦେଖାଯାଉଛି ।''

''ଠିକ୍ କଥା । ଆଚ୍ଛା, ଏଠି ଗୋଟେ ଦରଜା ଅଛି । ସେ ତ ଏଠି ଚେଷ୍ଟା କରିପାରିଥାଆନ୍ତା । ଏ ଦରଜାଟା କାହିଁକି ଅଛି ?''

''ଏଟା ଚାକରବାକରଙ୍କ ପାଇଁ ଗୋଟେ ଦରଜା । ଅବଶ୍ୟ ରାତିରେ ଏଠି ତାଲା ପଡ଼େ ।''

'ଆଗରୁ କେବେ ଏମିତି ଘଟିଥିଲା ?'

''ନା, କେବେ ନୁହେଁ ।''

''ଚୋର ଆକୃଷ୍ଟ ହେଲାପରି ସୁନା ରୁପା ବା ଅନ୍ୟ କିଛି ଜିନିଷ ଆପଣଙ୍କ ଘରେ ଅଛି ?''

''ନା, ସେମିତି କିଛି ମୂଲ୍ୟବାନ ଜିନିଷ ନାହିଁ ।''

ହୋମ୍ସ ପକେଟ୍‌ରେ ହାତ ପୂରାଇ ବେଖାତିରିଆ ଭାବରେ ଘର ଚାରିପାଖରେ ବୁଲିଲେ । ଏହା ତାଙ୍କ ଚରିତ୍ରରୁ ପୂରା ଅଲଗା । ସେ ଜୋସେଫ୍

ହାରିସନ୍‌ଙ୍କୁ କହିଲେ, ''ଆଚ୍ଛା, ଲୋକଟା ଯେଉଁ ଜାଗାରେ ବାଡ଼ ଡେଇଁ ଚାଲିଯାଇଛି, ଆପଣ ପରା ସେ ଜାଗାଟା ଦେଖିଥିଲେ ? ଚାଲନ୍ତୁ ସେ ଜାଗାଟା ଦେଖିବା ?'

ଯୁବକ ହାରିସନ୍ ଆମକୁ ଗୋଟେ ଜାଗାକୁ ବାଟ କଢ଼ାଇନେଲେ । ସେଠି କାଠ ରେଲିଂଟା ଫାଟିଯାଇଛି । ଛୋଟ କାଠି ଖଣ୍ଡେ ଭାଙ୍ଗି ଝୁଲୁଥାଏ । ହୋମ୍‌ସ ସେ ଖଣ୍ଡ ଟାଣି ଆଣି ପରୀକ୍ଷା କରି ଦେଖିଲେ ।

''ଏଇଟା କାଲି ରାତିରେ ଭାଙ୍ଗିଛି ବୋଲି ଆପଣ ଭାବୁଛନ୍ତି ? ଆଗରୁ ଭାଙ୍ଗିଗଲା ପରି ଜଣାଯାଉଛି । ନୁହେଁ ?''

''ହଁ, ସମ୍ଭବ ସେଇଆ ।''

''ଆଉ ପାଖେ ଡେଇଁବାର କୌଣସି ଚିହ୍ନ ନାହିଁ । ନା, ଆମେ ଏଠୁ କିଛି ପାଇବାର ଆଶା ନାହିଁ । ଚାଲନ୍ତୁ ଶୋଇବାଘରକୁ ଯାଇ ଏ ବିଷୟ ଆଲୋଚନା କରିବା ।''

ପର୍‌ସି ଖୁବ୍ ଧୀରେ ଚାଲୁଥାଏ । ତା' ଭବିଷ୍ୟତ ଶାଳକ ଉପରେ ଆଉଜି ପଡ଼ିଥାଏ । ହୋମ୍‌ସ ପଡ଼ିଆ ଉପରେ ଚଞ୍ଚଳ ଚାଲିଗଲେ । ସେ ଦୁହେଁ ଆସିବାର ଅନେକ ଆଗରୁ ଆମେ ଶୋଇବାଘରର ଖୋଲା ଝରକା ପାଖେ ପହଞ୍ଚିଗଲୁ । ମନକୁ ଛୁଇଁଲାଭଳି ସ୍ୱରରେ ହୋମ୍‌ସ କହିଲେ, ''ମିସ୍ ହାରିସନ୍ ! ଆପଣ ଯେଉଁଠି ବସିଛନ୍ତି, ଦିନସାରା ସେଠି ବସିରହିବାକୁ ପଡ଼ିବ । ଯାହାହେଲେ ବି ଆପଣ ସେଠୁ ଉଠିବେ ନାହିଁ । ଏଟା ଅତି ଗୁରୁତ୍ୱପୂର୍ଣ୍ଣ ।''

ଆଶ୍ଚର୍ଯ୍ୟ ହୋଇ ତରୁଣୀ କହିଲେ, ''ଆପଣ ଯଦି ଚାହାନ୍ତି ମୁଁ ନିଶ୍ଚୟ ବସି ରହିବି ।''

''ଶୋଇବାକୁ ଗଲାବେଳେ ଏ ଘର ବାହାର ପାଖୁ ତାଲାପକାଇ ଚାବିଟା ଆପଣଙ୍କ ପାଖେ ରଖିବେ । ନିୟମ କରନ୍ତୁ ।''

''କିନ୍ତୁ ପର୍‌ସି ?''

''ସେ ଆମ ସାଥିରେ ଲଣ୍ଡନ ଯିବେ ।''

''ଆଉ ତାଙ୍କୁ ଛାଡ଼ି ମୁଁ ଏଠି ରହିବି ?''

''ହଁ, ଏଟା ତାଙ୍କ ମଙ୍ଗଳ ପାଇଁ । ଆପଣ ତାଙ୍କ ପାଇଁ ଏତିକି କରିବେ । ଶୀଘ୍ର, ନିୟମ କରନ୍ତୁ ।''

ତରୁଣୀ ମୁଣ୍ଡ ଟୁଙ୍ଗାରି ସମ୍ମତି ଜଣାଇଲେ । ଏତିକିବେଳେ ଅନ୍ୟ ଦୁଇଜଣ ଆସି ପହଞ୍ଚିଲେ ।

''ତୁ ସେଠି ମନଦୁଃଖ କରି ବସିଛୁ କାହିଁକି ଆନି ?'' ତାଙ୍କ ଭାଇ କହିଲେ, ''ବାହାର ସୂର୍ଯ୍ୟକିରଣକୁ ଟିକିଏ ଆ ।''

''ନା, ଧନ୍ୟବାଦ । ମୋ ମୁଣ୍ଡ ଟିକିଏ ବଥାଉଛି । ଏ ଘରଟା ବେଶ୍ ଥଣ୍ଡା ଆଉ ଆରାମଦାୟକ ଲାଗୁଛି ।''

ଫର୍‌ପି ପଚାରିଲା, ''ଏଥର ଆପଣଙ୍କ ପ୍ରସ୍ତାବ କ'ଣ ମିଷ୍ଟର ହୋମ୍‌ସ ?''

''ଦେଖନ୍ତୁ, ଏଇ ଛୋଟ ଘଟଣାର ଅନୁସନ୍ଧାନ କରିବାକୁ ଯାଇ ଆମେ ମୂଳ ଘଟଣାକୁ ହେଳା କରିବା ଠିକ୍ ହେବ ନାହିଁ । ଆପଣ ଯଦି ଆମ ସାଥିରେ ଲଣ୍ଡନ ଯାଇପାରନ୍ତେ, ତେବେ ମୋତେ ଖୁବ୍ ସାହାଯ୍ୟ କରନ୍ତେ ।''

''କ'ଣ ଏଇ ବର୍ତ୍ତମାନ ?''

''ଯେତେ ଶୀଘ୍ର ଆପଣ ବାହାରିପାରିବେ । ଧରନ୍ତୁ ଏଇ ଘଣ୍ଟେ ଭିତରେ ।''

''ଯଦି ପ୍ରକୃତରେ ମୁଁ କିଛି ସାହାଯ୍ୟ କରିପାରିବି ତେବେ ଯିବାକୁ ମୋର ଢେର୍ ବଳ ଅଛି ।''

''ଆପଣ ବହୁତ ସାହାଯ୍ୟ କରିବେ ।''

''ଆଜି ରାତି ମୁଁ ସେଠି ରହିବା ପାଇଁ ଆପଣ ବୋଧହୁଏ ଚାହାନ୍ତି ?''

''ମୁଁ ସେକଥା କହିବାକୁ ଯାଉଥିଲି ।''

''ମୋ ଗଲା ରାତିର ବନ୍ଧୁ ଯଦି ପୁଣି ଆସେ ସେ ଦେଖିବ ପକ୍ଷୀ ଉଡ଼ିଯାଇଛି । ଆମେ ସମସ୍ତେ ଆପଣଙ୍କ ହାତରେ । ଆପଣ କ'ଣ କରିବାକୁ ଚାହାନ୍ତି ଆମକୁ କୁହନ୍ତୁ । ମୋର ଦେଖାଶୁଣା କରିବାକୁ ଜୋସେଫ୍ ଆମ ସାଥିରେ ଯିବା ପାଇଁ ଆପଣ ବୋଧହୁଏ ପସନ୍ଦ କରିବେ ?''

''ନା ଦର୍କାର ନାହିଁ । ଆପଣ ଜାଣନ୍ତି, ମୋ ବନ୍ଧୁ ୱାଟ୍‌ସନ ଡାକ୍ତର । ସେ ଆପଣଙ୍କ ଦେଖାଶୁଣା କରିବେ । ଏଠି ଖିଆପିଆ ସାରି ଆମେ ତିନିଜଣ ସାଥି ହୋଇ ଟାଉନ୍‌କୁ ଯିବା ।''

ତାଙ୍କ କଥା ଅନୁସାରେ ସବୁ ଠିକ୍‌ଠାକ୍ ହେଲା । ହୋମ୍‌ସଙ୍କ ନିର୍ଦ୍ଦେଶ ଅନୁସାରେ ମିସ୍ ହାରିସନ୍ କିଛି ଆଳକରି ଶୋଇବାଘର ଛାଡ଼ିଲେ ନାହିଁ । ମୋ ବନ୍ଧୁଙ୍କର ଏ କୌଶଳର ଉଦ୍ଦେଶ୍ୟ କ'ଣ ମୁଁ କିଛି ବୁଝିପାରିଲି ନାହିଁ । କିନ୍ତୁ ହୋମ୍‌ସ ଆମକୁ ଯା ଅପେକ୍ଷା ଆହୁରି ବେଶି ବିସ୍ମୟରେ ପକାଇଦେଲେ । ଆମ ସାଥିରେ ଷ୍ଟେସନକୁ ଆସି, ଆମକୁ ଟ୍ରେନ୍‌ରେ ବସାଇଦେଇ ସେ କହିଲେ ଯେ ଓକିଙ୍ଗ୍ ଛାଡ଼ି ଯିବାର ଉଦ୍ଦେଶ୍ୟ ତାଙ୍କର ନାହିଁ । ସେ କହିଲେ, ''ଯିବା ପୂର୍ବରୁ ଗୋଟେ ଯୋଡ଼େ ପଏଣ୍ଟ ମୁଁ ତୁମକୁ ଜଣାଇଦେବାକୁ ଚାହେଁ । ମିଷ୍ଟର ଫେଲ୍‌ପସ୍, ଆପଣଙ୍କର ଅନୁପସ୍ଥିତି ମୋତେ କେତେ ପରିମାଣରେ ସାହାଯ୍ୟ କରିବ । ୱାଟ୍‌ସନ୍ ! ଲଣ୍ଡନରେ ପହଞ୍ଚିଲାକ୍ଷଣି ତୁମେ ଆମ ଏ ବନ୍ଧୁଙ୍କ ଧରି ଗୋଟେ ଗାଡ଼ିରେ ସାଙ୍ଗେ ସାଙ୍ଗେ ବେକର ଷ୍ଟ୍ରୀଟ୍ ଚାଲିଯିବ । ମୁଁ ଫେରିବାଯାଏ ସେଠି ବରାବର ତାଙ୍କ ପାଖେ ରହିବ । ଏତିକି କଲେ ମୁଁ ବଡ଼ ଉପକୃତ ହେବି । ଭାଗ୍ୟକୁ ତୁମେ ଦି'ଜଣ ପୁରୁଣା ସ୍କୁଲସାଥୀ, ତେଣୁ ଅନେକ ବିଷୟ କଥାବାର୍ତ୍ତା ହୋଇପାରିବ । ମିଷ୍ଟର ଫେଲ୍‌ପସ୍ ଆମର ଅଧିକା ଶୋଇବା ଘରଟାରେ ଆଜି ରାତି ଶୋଇପାରିବେ । କାଲି ସକାଳେ ଗୋଟେ ଟ୍ରେନ୍ ଅଛି । ୱାଟର୍‌ଲୁରେ ଆଠଟାବେଳେ ପହଞ୍ଚିବ । ତେଣୁ ମୁଁ ଠିକ୍ ଜଳଖିଆ ଖାଇବା ବେଳକୁ ପହଞ୍ଚିଯିବି ।''

ହତାଶ ହୋଇ ଫେଲ୍‌ପସ୍ କହିଲା, ''କିନ୍ତୁ ଲଣ୍ଡନରେ ଆମ ଅନୁସନ୍ଧାନ କଥା ?''

''ଆମେ ସେଟା କାଲି କରିପାରିବା । ବର୍ତ୍ତମାନ ଏଠି ମୋର ଆବଶ୍ୟକତା ବେଶି ।''

ଟ୍ରେନ୍ ଧୀରେ ଧୀରେ ପ୍ଲାଟଫର୍ମ ଛାଡ଼ିଲା । ପର୍‌ସି କହିଲା, ''ଆପଣ ବ୍ରିଅର ବେୟାରରେ ସେମାନଙ୍କୁ କହିଦେବେ, ମୁଁ କାଲିରାତିରେ ଫେରିବି ।''

''ମୁଁ ବ୍ରିଅର ବେୟାର ଯିବିନାହିଁ ବୋଲି ଭାବିଛି'', ଏତିକି କହି ସେ ହାତହଲାଇ ଆମକୁ ବିଦାୟଦେଲେ । ଆମକୁ ଧରି ଟ୍ରେନ୍ ପ୍ଲାଟଫର୍ମ ଛାଡ଼ିଲା ।'

ବାଟରେ ଫେଲ୍‌ପସ୍ ଆଉ ମୁଁ ଏ ବିଷୟରେ କଥାବାର୍ତ୍ତା ହେଲୁ । କିନ୍ତୁ ଏ ନୂଆ ପରିସ୍ଥିତିର କିଛି ସନ୍ତୋଷଜନକ କାରଣ ବାହାର କରିପାରିଲୁ ନାହିଁ । ଫେଲ୍‌ପସ୍ କହିଲା, ''ମୁଁ ଭାବୁଛି, ଗଲା ରାତିର ଡକାୟତି ବିଷୟରେ କିଛି

ସୂତ୍ର ବାହାରକରିବା ତାଙ୍କ ଉଦ୍ଦେଶ୍ୟ । ମୋ ମତରେ ଲୋକଟା ସାଧାରଣ ଚୋର ନୁହେଁ ।''

''ତେବେ ତୁମର ଧାରଣା କ'ଣ ?''

''ତୁମେ ହୁଏତ ଏଟାକୁ ମୋର ଦୁର୍ବଳତା ଭାବିପାର, କିନ୍ତୁ ସତ କହୁଛି, ମୋ ବିରୁଦ୍ଧରେ ଗୋଟେ ବିରାଟ ରାଜନୈତିକ ଚକ୍ରାନ୍ତ ଚାଲିଛି । କୌଣସି କାରଣରୁ ଚକ୍ରାନ୍ତକାରୀମାନେ ମୋତେ ମାରିଦେବାକୁ ଚେଷ୍ଟା କରୁଛନ୍ତି । ଅବଶ୍ୟ କାରଣଟା କ'ଣ ହୋଇପାରେ ମୁଁ ଭାବିପାରୁ ନାହିଁ । ଏଟା ଅତିରଞ୍ଜିତ ଜଣାଯାଇପାରେ, କିନ୍ତୁ ଘଟଣାଗୁଡ଼ା ବିଚାର କର । ଜଣେ ଚୋର ଗୋଟେ ଶୋଇବାଘର ଝରକା ଭାଙ୍ଗିବାକୁ ଯିବ କାହିଁକି ? ସେଠୁ ତ ସେ କିଛି ପାଇବାର ଆଶା ନାହିଁ । ତା'ଛଡ଼ା ସେ ହାତରେ ଗୋଟେ ଲମ୍ବା ଛୁରୀ ଧରି ଆସିବ କାହିଁକି ?''

''ସେଟା ଛୁରୀ ବୋଲି ତୁମେ ଠିକ୍ ଦେଖିଛ ? ସିନ୍ଧିକାଠି ନୁହେଁ ତ ?''

''ନା, ନା, ମୁଁ ପରିଷ୍କାର ଦେଖିଛି, ଛୁରୀଟା ।''

''କିନ୍ତୁ ତୁମଠି କିଏ କାହିଁକି ଏମିତି ଶତ୍ରୁତା କରିବ ?''

''ସେଇ ତ ହେଲା ସମସ୍ୟା ।''

''ହୋମ୍‌ସ ଯଦି ସେଇଆ ଭାବିଥାଆନ୍ତି, ତେବେ ସେଟା ତାଙ୍କ ରହିବା କାରଣ । ମନେକର ତୁମେ ଯାହା ଭାବୁଛ ସେଟା ଠିକ୍ । ଯେଉଁ ଲୋକଟା କାଲି ଆସି ତୁମକୁ ଭୟ ଦେଖାଇଛି, ସେ ଯଦି ତାକୁ ଧରିପାରନ୍ତି, ତେବେ ସନ୍ଧିପତ୍ରଟା କିଏ ନେଇଛି ଖୋଜି ବାହାର କରିବାରେ ତା ଅନେକ ସାହାଯ୍ୟ କରିବ । ତୁମର ଦୁଇଜଣ ଶତ୍ରୁ ଅଛନ୍ତି, ସେଥିରୁ ଜଣେ ଦଲିଲ ଚୋରି କରି ନେଇଛି, ଆଉ ଜଣେ ତୁମକୁ ମାରିବାକୁ ବସିଛି, ଏକଥା ଭାବିବା ନିହାତି ଭୁଲ୍ ।''

''କିନ୍ତୁ ମିଷ୍ଟର ହୋମ୍‌ସ ତ କହିଲେ ସେ ବ୍ରିଅର ବେୟାର ଯିବେ ନାହିଁ ।''

''ମୁଁ ଅନେକ ଦିନ ହେଲା ତାଙ୍କୁ ଜାଣେ । କିନ୍ତୁ ଯଥେଷ୍ଟ କାରଣ ନ ଥାଇ କିଛି କରିବାର ମୁଁ କେବେ ତାଙ୍କୁ ଦେଖି ନାହିଁ ।'' ଏତିକିରେ ଆମର କଥାବାର୍ତ୍ତା ଅନ୍ୟ ବିଷୟ ଆଡ଼କୁ ବଦଳିଲା ।

ଦିନଟା ସାରା ମୋତେ ବଡ଼ କ୍ଳାନ୍ତ ଲାଗିଲା । ଫେଲ୍‌ପସ୍ ଦୀର୍ଘଦିନ ଧରି ବେମାର ପଡ଼ି ଖୁବ୍ ଦୁର୍ବଳ ହୋଇଯାଇଥାଏ । ତାର ଦୁର୍ଭାଗ୍ୟ ତାକୁ ଆହୁରି

ବେଶି ଦୁର୍ବଳ କରିପକାଇଥାଏ । ମୁଁ ଆଫଗାନିସ୍ଥାନ, ଭାରତ କଥା ଆଉ ବିଭିନ୍ନ ସାମାଜିକ କଥା କହି ତା ମନ ଭୁଲାଇବାକୁ ଚେଷ୍ଟା କରୁଥାଏ; କିନ୍ତୁ ବୃଥାରେ । ସେ ସବୁବେଳେ ତା ଦଲିଲ କଥା ମନେପକାଉଥାଏ । ହୋମ୍‌ସ କ'ଣ କରୁଥିବେ, ଲର୍ଡ଼ ହୋଲ୍ଡ଼ ହର୍‌ଷ୍ଟ କି ପଦକ୍ଷେପ ନେବେ, ସକାଳକୁ କ'ଣ ଘଟିବ, ଏଇ କଥା ଅନୁମାନ କରୁଥାଏ । ସଂଧ୍ୟା ହେଲା ପରେ ତା ବ୍ୟଗ୍ରତା ବେଶି ବଢ଼ିଗଲା ।

ପଚାରିଲା, ''ହୋମ୍‌ସଙ୍କ ଉପରେ ତୁମର ଦୃଢ଼ ଆସ୍ଥା ଅଛି ?''

''ସେ କେତେକ ଉଲ୍ଲେଖନୀୟ କାମ କରିବାର ମୁଁ ଦେଖିଛି ।''

'କିନ୍ତୁ ଏପରି ଘଟଣାରେ ସେ କେବେ ଆଲୋକପାତ କରିଛନ୍ତି ?'

''ହଁ, ଏ ସମସ୍ୟାଠାରୁ କମ୍ ସୂତ୍ର ଥିବା ସମସ୍ୟା ସେ ଉଦ୍‌ଘାଟନ କରିଥିବା ମୁଁ ଜାଣେ ।''

''କିନ୍ତୁ ଏଭଳି ବିରାଟ ସ୍ୱାର୍ଥ ନଷ୍ଟ ହେବାଭଳି କେଶ୍ ହୋଇନଥିବ ।''

''ସେକଥା ମୁଁ ଜାଣେନା । କିନ୍ତୁ ମୁଁ ଜାଣେ ସେ ଅତି ଗୁରୁତ୍ୱପୂର୍ଣ୍ଣ ଘଟଣାରେ ସେ ଇଉରୋପର ତିନିଟା ରାଜପରିବାର ଲାଗି କାମ କରିଛନ୍ତି ।''

''ତୁମେ ତ ତାଙ୍କୁ ଭଲ ଭାବେ ଜାଣ । ସେ ଏମିତି ଦୁର୍ବୋଧ ଲୋକ ଯେ ମୁଁ ତାଙ୍କ କଥା କିଛି ବୁଝିପାରୁନାହିଁ । ତୁମେ କ'ଣ ଭାବୁଛ, ତାଙ୍କର ଆଶା ଅଛି ?''

''ସେ ଏଥିରେ ସଫଳ ହେବେ ବୋଲି ଆଶା କରୁଛନ୍ତି ?''

''ସେ କଥା ସେ କିଛି କହିନାହାନ୍ତି ।''

'ସେଇ ତ ହେଲା ଅଶୁଭ ଲକ୍ଷଣ ।'

'ନା, ବରଂ ମୁଁ ଦେଖିଛି, ସେ ଯେତେବେଳେ ଠିକ୍ ବାଟ ପାଆନ୍ତି ନାହିଁ, ସେତେବେଳେ ସେ କଥା ପ୍ରକାଶ କରିଦିଅନ୍ତି । ଯେତେବେଳେ ଠିକ୍ ବାଟରେ ଯାଆନ୍ତି, କିନ୍ତୁ ପୂରା ନିଶ୍ଚିତ ହୋଇନଥାନ୍ତି ସେତେବେଳେ ସେ ଚୁପ୍ ରହନ୍ତି । ଆମେ ସେ ବିଷୟରେ ନାନା ଦୁଷ୍ଚିନ୍ତା କରି କିଛି ଲାଭ ନାହିଁ । ତେଣୁ ମୋ କଥା ମାନି ଶୋଇବ ଯାଅ ।'

ବହୁତ ବୁଝାବୁଝି କରେଇବାରୁ ସେ ମୋ କଥା ମାନିଲା, କିନ୍ତୁ ତା ଢଙ୍ଗଢାଙ୍ଗରୁ ଜାଣିଲି ସେ ଶୋଇପାରିବ ନାହିଁ । ପ୍ରକୃତରେ ତା ମନର ଅବସ୍ଥା

ଡିଆଁରୋଗ ପରି ମୋତେ ଧରିପକାଇଲା । ମୁଁ ବିଛଣାରେ ପଡ଼ିରହି ଏଇ ଅଦ୍ଭୁତ ସମସ୍ୟା ବିଷୟରେ ଭାବୁ ଭାବୁ ଆଉ ଶହ ଶହ ତଥ୍ୟ ଚିନ୍ତା କରିବାରେ ଲାଗିଲି, କିନ୍ତୁ ପ୍ରତ୍ୟେକଟା ତାର ପୂର୍ବ ତଥ୍ୟଠାରୁ ଅଧିକ ଅସମ୍ଭବ ଜଣାଗଲା । ହୋମ୍‌ସ ଓକିଙ୍ଗ୍‌ରେ ରହିଲେ କାହିଁକି ? ଦିନସାରା ଶୋଇବାଘରେ ରହିବାକୁ ସେ ମିସ୍ ହାରିସନ୍‌ଙ୍କୁ କହିଲେ କାହିଁକି ? ସେ ରହିବା କଥା ବ୍ରିଅର ବେୟାର୍‌ରେ କାହାରିକୁ ନ ଜଣାଇବାକୁ ସେ ଏତେ ଯତ୍ନ କଲେ କାହିଁକି ? ଏଇସବୁ କଥାକୁ ଖାପ୍ ଖାଇଲା ଭଳି ଗୋଟେ କାରଣ ବାହାର କରିବାକୁ ଚିନ୍ତା କରୁ କରୁ ମୁଁ ଶୋଇପଡ଼ିଲି ।

ତା'ପର ଦିନ ସକାଳେ ମୁଁ ଉଠିଲାବେଳକୁ ସାତଟା ବାଜିଯାଇଥିଲା । ସାଙ୍ଗେ ସାଙ୍ଗେ ଫେଲପ୍‌ସ ରୁମ୍‌କୁ ଗଲି । ଦେଖିଲି ରାତି ସାରା ନ ଶୋଇ ତା ଅବସ୍ଥା ଅତି ଖରାପ । ମୋତେ ଦେଖିବା ମାତ୍ରେ ହୋମ୍‌ସ ଫେରିଲେ କି ନାହିଁ ପଚାରିଲା । କହିଲି, ''ସେ ଯେତେବେଳେ ଆସିବାକୁ କହିଛନ୍ତି, ଠିକ୍ ସେତିକିବେଳକୁ ଆସିବେ । ମୁହୂର୍ତ୍ତେ ଆଗରୁ ନୁହେଁ କି ମୁହୂର୍ତ୍ତେ ଡେରିରେ ନୁହେ ।''

ମୋ କଥା ସତ ହେଲା । ଆଠଟା ପରେ ପରେ ଗୋଟେ ଘୋଡ଼ାଗାଡ଼ି ଗେଟ୍ ପାଖରେ ପହଞ୍ଚିଲା । ହୋମ୍‌ସ ତା' ଭିତରୁ ବାହାରିଲେ । ଝରକା ପାଖରେ ଠିଆହୋଇ ଆମେ ଦେଖିଲୁ ତାଙ୍କ ବାଁ ହାତରେ ଗୋଟେ ବ୍ୟାଣ୍ଡେଜ୍ ବନ୍ଧା ହୋଇଛି, ତାଙ୍କ ମୁହଁ ଖୁବ୍ ଶୁଖିଲା ଆଉ ମଳିନ ଦିଶୁଛି । ସେ ଘର ଭିତରକୁ ଆସିଲେ; କିନ୍ତୁ ଉପର ମହଲାକୁ ଆସିବାରେ ତାଙ୍କର ଟିକିଏ ଡେରିହେଲା । ଫେଲ୍‌ପସ୍ କହିଲା, ''ସେ ପୂରା ଅସଫଳ ହେଲା ପରି ଦିଶୁଛନ୍ତି ।'' ତା' କଥା ଠିକ୍ ବୋଲି ସ୍ୱୀକାର କରିବାକୁ ମୁଁ ବାଧ ହେଲି । ତାପରେ କହିଲି, ''ଘଟଣାଟାର ସୂତ୍ର ବୋଧହୁଏ ଏଇ ଟାଉନ୍‌ରେ ଅଛି ।''

ଫେଲ୍‌ପସ୍ ବଡ଼ ବିକଳ ହୋଇଉଠିଲା । କହିଲା, ''କ'ଣ ହୋଇଛି ମୁଁ ଜାଣେନା । ମୁଁ ବଡ଼ ଆଶା କରିଥିଲି, କିନ୍ତୁ କାଲି ତ ତାଙ୍କ ହାତ ଏମିତି ବ୍ୟାଣ୍ଡେଜ୍ ବନ୍ଧା ହୋଇନଥିଲା । ଘଟଣା କ'ଣ ହୋଇପାରେ ?''

ଏତିକିବେଳେ ହୋମ୍‌ସ କୋଠରି ଭିତରକୁ ଆସିଲେ । ତାଙ୍କୁ ଦେଖି ପଚାରିଲି, ''ଏ କ'ଣ ? ତୁମେ ଆହତ ହୋଇଛ ?''

ହସି ହସି ସେ କହିଲେ, ''ଛାଡ଼, ସାମାନ୍ୟ ଟିକିଏ ଖଣ୍ଡିଆ ହୋଇଯାଇଛି । ସେଟା ବି ମୋ ଦୋଷରୁ । ହେଲେ ମିଷ୍ଟର୍ ଫେଲ୍‌ପସ୍ ! ମୁଁ ଯେତେ କେଶ୍ ଅନୁସନ୍ଧାନ କରିଛି, ଆପଣଙ୍କ ଏ କେଶ୍ ପରି ଜଟିଳ କେଶ୍ ନାହିଁ ।''

''ମୁଁ ବି ଆଶଙ୍କା କରୁଥିଲି, ଏ କେଶ୍ ଅନୁସନ୍ଧାନ କରିବା ଆପଣଙ୍କ ଶକ୍ତିର ବାହାରେ ।''

''ମୋର ଏଥିରେ ଖୁବ୍ ଅସାଧାରଣ ଅନୁଭୂତି ହୋଇଛି ।''

ମୁଁ କହିଲି, ''ଏ ବ୍ୟାଣ୍ଡେଜରୁ ଆମେ ଜାଣୁଛୁ, ତୁମେ କିଛି ଗୋଟେ ଦୁର୍ଘଟଣାର ସମ୍ମୁଖୀନ ହୋଇଛ । କ'ଣ ହେଲା ଆମକୁ କହିବ ନାହିଁ ?''

''ଜଳଖିଆ ଖାଇସାରିବା ପରେ ୱାଟ୍‌ସନ୍ ! ଆଜି ସକାଳେ ମୁଁ ତିରିଶ ମାଇଲ୍ ବାଟ ଅତିକ୍ରମ କରିଛି । ହଁ, ମୋ ବିଜ୍ଞାପନର କିଛି ଉତ୍ତର ଆସିନାହିଁ ବୋଧହୁଏ । ଯାହାହେଉ, ଆମେ ତ ସବୁବେଳେ ସଫଳ ହେବାର ଆଶା କରିପାରିବା ନାହିଁ ।''

ଜଳଖିଆ ପାଇଁ ଟେବୁଲ୍ ସଜାହେଲା । ମୁଁ ଠିକ୍ ବେଲ୍‌ଟା ଦେବାକୁ ଗଲାବେଳକୁ ମିସେସ୍ ହଡ୍‌ସନ୍ ଆସି ପହଞ୍ଚିଲେ । ହାତରେ ଚା' ଆଉ କଫି, ଟିକିଏ ପରେ ସେ ଜଳଖିଆ ପ୍ଲେଟ୍ ଧରି ଆସିଲେ । ତା'ଉପରେ ଢାଙ୍କୁଣୀ ଥାଏ । ହୋମ୍‌ସ ଭୋକିଲା, ମୁଁ ଉଦ୍‌ଗ୍ରୀବ ଆଉ ପର୍ସି ଏକାବେଳକେ ହତାଶ ।

ହୋମ୍‌ସ ତାଙ୍କ ପ୍ଲେଟ୍‌ର ଢାଙ୍କୁଣୀ ଉଠାଇଦେଲେ । ସେଥିରେ କୁକୁଡ଼ାମାଂସ ଥିଲା । ହସି ହସି ସେ କହିଲେ, ''ଯାହାହେଉ ମିସେସ୍ ହଡ୍‌ସନ୍‌ଙ୍କର ଜଳଖିଆ ବିଷୟରେ ଭଲ ଧାରଣା ହୋଇଗଲାଣି । ତୁମ ପ୍ଲେଟ୍‌ରେ କ'ଣ ଅଛି ୱାଟ୍‌ସନ୍ ?''

''ମାଂସ ଆଉ ଅଣ୍ଡା ।''

''ଠିକ୍ ଅଛି । ଆପଣ କ'ଣ ଖାଇବେ ମିଷ୍ଟର ଫେଲ୍‌ପସ୍ ? କୁକୁଡ଼ା ମାଂସ ତରକାରି, ଅଣ୍ଡା, ନା ଆଉ କିଛି ?''

''ଧନ୍ୟବାଦ, ମୁଁ କିଛି ଖାଇବି ନାହିଁ ।''

''ଆହା, ଖାଆନ୍ତୁନା । ଆପଣଙ୍କ ସାମନା ପ୍ଲେଟ୍‌ରେ ଯାହା ଅଛି, ଖାଆନ୍ତୁ ।''

''ଧନ୍ୟବାଦ ! ମୁଁ କିଛି ଖାଇପାରିବି ନାହିଁ ।''

ହସି ହସି ହୋମ୍‌ସ କହିଲେ, ''ତା'ହେଲେ ସେ ଖାଦ୍ୟତକ ମୁଁ ଖାଇଲେ ଆପଣ କିଛି ଆପତ୍ତି କରିବେ ନାହିଁ । ଦୟାକରି ସେ ପ୍ଲେଟ୍‌ଟା ମୋ ଆଡ଼େ ଦିଅନ୍ତୁ ।''

ପରସି ପ୍ଲେଟ୍‌ର ଢାଙ୍କୁଣୀଟା ଖୋଲିଦେଲା । ସେ ହଠାତ୍ ଚିତ୍କାର କରିଉଠିଲା, ଆଉ ବଲବଲ କରି ଚାହିଁ ରହିଲା । ତା ମୁହଁଟା ସେଇ ପ୍ଲେଟ୍‌ପରି ଧଳା ହୋଇ ଯାଇଥାଏ । ପ୍ଲେଟ୍ ମଝିରେ ଥିଲା ନୀଳ ଆଉ ମାଟିଆ କାଗଜର ବିଡ଼ା । ସେ ସେଟାକୁ ହାତରେ ଧରି ଆଖି ପୂରାଇ ଦେଖିଗଲା । ତା'ପରେ ସେଟାକୁ ଛାତିରେ ଚାପିଧରି ଆନନ୍ଦରେ ଚିତ୍କାର କରି, ପାଗଳ ପରି ଘରସାରା ଡେଇଁବୁଲିଲା । ଟିକିଏ ପରେ ସେ ଉଦ୍‌ବେଗରେ କ୍ଳାନ୍ତ ହୋଇପଡ଼ି ନିର୍ଜୀବ ପରି ଗୋଟେ ଆର୍ମଚଉକିରେ ବସିପଡ଼ିଲା । ଆମେ କିଛି ବ୍ରାଣ୍ଡି ନେଇ ତାକୁ ପିଆଇଦେଲୁ; ନହେଲେ ସେ ହୁଏତ ଅଚେତ ହୋଇଯାଇଥାନ୍ତା ।

ହୋମ୍‌ସ ତା ପିଠିରେ ହାତ ଆପୁଡ଼ାଇ କହିଲେ, ''ଧୈର୍ଯ୍ୟ ଧରନ୍ତୁ । ଏମିତିଭାବେ ଘଟଣାଟା ଆପଣଙ୍କ ଆଗକୁ ଆଣିବା ମୋର ବଡ଼ ଭୁଲ୍ ହୋଇଛି । ହେଲେ ୱାଟ୍‌ସନ୍‌ଙ୍କୁ ପଚାରନ୍ତୁ । ମୁଁ ସବୁ କାମ ଏମିତି ଟିକିଏ ନାଟକୀୟ ଭଙ୍ଗୀରେ କରିଥାଏ ।''

ଫେଲ୍‌ପସ୍ ତାଙ୍କ ହାତ ଜାବୁଡ଼ି ଧରି କହିଲା, ''ଭଗବାନ୍ ଆପଣଙ୍କର ମଙ୍ଗଳ କରନ୍ତୁ । ଆପଣ ମୋ ମାନସମ୍ମାନ, ଜୀବନ ସବୁ ରକ୍ଷା କରିଛନ୍ତି ।''

''କିନ୍ତୁ ମୋ ନିଜ ଜୀବନକୁ ବିପନ୍ନ କରି । ସତ କହୁଛି, ଆପଣ ଗୋଟେ ଗୁରୁତର କାମରେ ଭୁଲ୍ କରିବା ଯେମିତି ନିନ୍ଦାର କଥା, ମୁଁ ଏ କେଶ୍‌ରେ ଅସଫଳ ହେବା ବି ସେମିତି ନିନ୍ଦାର କଥା ।''

ଫେଲ୍‌ପସ୍ ସେ ମୂଲ୍ୟବାନ ଦଲିଲକୁ କୋଟ୍ ଭିତର ପାଖ ପକେଟ୍‌ରେ ପୂରାଇ କହିଲା, ''ଆପଣଙ୍କ ଜଳଖିଆରେ ବାଧାଦେବା ମୋର ଇଚ୍ଛା ନୁହେଁ । କିନ୍ତୁ ଏଟା କେଉଁଠି ଥିଲା ଆଉ ଆପଣ କେମିତି ପାଇଲେ ଜାଣିବାକୁ ମୁଁ ବଡ଼ ଉଚ୍ଛନ୍ନ ହୋଇ ଯାଉଛି ।''

ହୋମ୍‌ସ କଫି କପ୍‌ଟା ଶେଷକରି କିଛି ମାଂସ ଆଉ ଅଣ୍ଡା ଖାଇନେଲେ । ତା'ପରେ ସିଗାରେଟ୍ ପାଇପ୍ ଲଗାଇ ତାଙ୍କ ଚଉକିରେ ବସିଗଲେ ।

ସେଇଠୁ ସେ ଆରମ୍ଭ କଲେ, ''ମୁଁ ପ୍ରଥମେ କ'ଣ କଲି ଆଉ ଶେଷରେ କେମିତି ଏ ଦଲିଲଟା ପାଇଲି, ସେ କଥା କହିବି । ଆପଣଙ୍କୁ ଷ୍ଟେସନ୍‌ରେ ଛାଡ଼ିଦେଇ ମୁଁ ସରେ'ର କେତେ ଜାଗାରେ ବୁଲାବୁଲି କରି ରିପ୍‌ଲି ବୋଲି ଗୋଟେ ଛୋଟ ସୁନ୍ଦର ଗାଁରେ ପହଞ୍ଚିଲି । ସେଠି ଚା' ଖାଇଲି । ଫ୍ଲାସ୍କରେ ଚା' ଭରିଲି, ଆଉ ପକେଟରେ କିଛି ସାଣ୍ଡଉଇଚ୍ ଧରିଲି । ସନ୍ଧ୍ୟା ହେବାଯାଏ ସେଠି ରହିଲି । ତା'ପରେ ଓକିଙ୍ଗ୍ ଆଡ଼କୁ ଚାଲିଲି । ଠିକ୍ ସୂର୍ଯ୍ୟାସ୍ତ ବେଳକୁ ବ୍ରିଅର୍ ବେୟାର୍ ପାଖରେ ପହଞ୍ଚିଲି । ରାସ୍ତାରୁ ଲୋକଗହଳି କମିବାଯାଏ ସେଠି ଅପେକ୍ଷା କଲି । ତା'ପରେ ବାଡ଼ ଡେଇଁ ହତା ଭିତରେ ପଶିଲି ।''

''କିନ୍ତୁ ଗେଟ୍ ତ ନିଶ୍ଚୟ ଖୋଲାଥିବ ?'' ଫେଲ୍‌ପସ୍ କହିଲା ।

''ହଁ, କିନ୍ତୁ ଏସବୁ କାମରେ ମୋର ପଦ୍ଧତି ଅଲଗା । ଯେଉଁଠି ଫାର୍ ଗଛ ତିନିଟା ଅଛି, ସେଇ ଜାଗାଟା ମୁଁ ଠିକ୍ କଲି । ସେଇ ଗଛ ଆଢୁଆଳରେ ବାଡ଼ ଡେଇଁପଡ଼ିଲି । ମୋତେ କେହି ଦେଖିବାର ସମ୍ଭାବନା ମୋଟେ ରହିଲା ନାହିଁ । ଗୁରୁଣ୍ଡି ଗୁରୁଣ୍ଡି ବୁଦା ଆଢୁଆଳରେ ଚାଲିଲି । ମୋ ପେଣ୍ଟ ଆଣ୍ଠୁର ଅବସ୍ଥା ଦେଖ । ଶେଷରେ ଆପଣଙ୍କ ଶୋଇବାଘର ଝରକା ସାମନାରେ ଥିବା ଫୁଲଗଛ ଆଢୁଆଳରେ ପହଞ୍ଚିଲି । ସେଇଠି ବସିରହି କ'ଣ ଘଟୁଛି ଦେଖିବାକୁ ଅପେକ୍ଷା କଲି ।

''ଆପଣଙ୍କ ରୁମ୍‌ର ପରଦା ଟଣା ଯାଇନଥିଲା । ଦେଖିଲି ମିସ୍ ହାରିସନ୍ ସେଠି ବସି ଖଣ୍ଡେ ବହି ପଢୁଛନ୍ତି । ଦଶଟା ବାଜି ପନ୍ଦର ମିନିଟ୍ ହେଲା । ସେ ବହି ବନ୍ଦକରି ଝରକା କିଳିବାକୁ ବାହାରିଲେ । ସେ ଦରଜାଟା ବନ୍ଦ କରିବା ଆଉ ତାଲାରେ ଚାବିଟା ଘୂରାଇବା ଶବ୍ଦ ବି ଶୁଣିପାରିଲି ।

ଫେଲ୍‌ପସ୍ ପଚାରିଲା, ''ଚାବି ?''

''ହଁ, ମୁଁ ମିସ୍ ହାରିସନ୍‌ଙ୍କୁ ନିର୍ଦ୍ଦେଶ ଦେଇଥିଲି, ସେ ଶୋଇବାକୁ ଗଲାବେଳେ ଘରେ ତାଲାପକାଇ ଚାବିଟା ନେଇଯିବେ । ସେ ମୋ କଥା ଅକ୍ଷରେ ଅକ୍ଷରେ ପାଳନ କରିଛନ୍ତି । ତାଙ୍କ ସହଯୋଗ ପାଇନଥିଲେ ଏ କାଗଜ ଆପଣଙ୍କ ପକେଟ୍‌କୁ ଆସିନଥାନ୍ତା । ତା'ପରେ ସେ ଶୋଇବାକୁ ଚାଲିଗଲେ । ଆଲୁଅ ସବୁ ଲିଭିଲା । ମୁଁ ଏକା ଫୁଲବଗିଚାରେ ବସିଥାଏ । ରାତିର ପାଗ ବେଶ୍ ଭଲ ଥାଏ । ତଥାପି ଅନିଦ୍ରାରେ ବସିରହି ବଡ଼ କଷ୍ଟ ହେଉଥାଏ । ଜଣେ

ଶିକାରୀ ପାଣିକୂଳରେ ବସି ଶିକାରକୁ ଅପେକ୍ଷା କଲାବେଳେ ଯେମିତି ଉଦ୍‌ଗ୍ରୀବ ହୁଏ, ଠିକ୍ ସେଇମିତି ଲାଗୁଥାଏ । ସେଇ ପାଖରେ ଗୋଟେ ଚର୍ଚ୍ଚ ଅଛି । ପ୍ରତି ପନ୍ଦର ମିନିଟ୍‌ରେ ସେଠି ଘଣ୍ଟା ବାଜେ । ମୋତେ ଜଣାଗଲା ଯେମିତି ଘଣ୍ଟା ବାଜିବା ବନ୍ଦ ହୋଇଗଲା । ଶେଷରେ ପ୍ରାୟ ଦୁଇଟା ବେଳକୁ ଗୋଟେ ବୋଲ୍‌ଟ୍ ପଛକୁ ପେଲିବା ପରି ଶବ୍ଦ ଶୁଭିଲା ; ତା'ପରେ ଚାବି ଖୋଲିବାର ଶବ୍ଦ । ଟିକିଏ ପରେ ଚାକରବାକର ଯିବାଆସିବା ବାଟଟା ଖୋଲିଗଲା, ଆଉ ମିଷ୍ଟର୍ ଜୋସେଫ୍ ହାରିସନ୍ ଜହ୍ନ ଆଲୁଅକୁ ଚାଲିଆସିଲେ ।''

ବିସ୍ମୟରେ ଫେଲ୍‌ପସ୍ ଚିତ୍କାର କରି ଉଠିଲା, ''ଜୋସେଫ୍ !''

''ତାଙ୍କ ମୁଣ୍ଡରେ ଟୋପି ନଥିଲା, କିନ୍ତୁ ଗୋଟେ ଲମ୍ବା କଳା ଜାମା କାନ୍ଧରେ ପଡ଼ିଥିଲା- କିଛି ବିପଦ ଆସିଲେ, ସେ ସାଙ୍ଗେ ସାଙ୍ଗେ ମୁହଁ ଘୋଡ଼େଇ ଦେଇପାରିବେ । କାନ୍ଥ ଛାଇରେ ସେ ପାଦ ଚିପି ଚିପି ଆଗେଇଲେ । ଝରକା ପାଖରେ ଆସି ପହଞ୍ଚିଲେ । ଗୋଟେ ଲମ୍ବା ଛୁରୀ କବାଟ ଫାଙ୍କରେ ଭର୍ତ୍ତି କରି ସେ ଭିତର ବାର୍‌ଟା ଉଠେଇଦେଲେ । ତା'ପରେ ଝରକାଟା ଖୋଲିଦେଲେ । ମୁଁ ଯେଉଁଠି ବସିଥାଏ ସେଠୁ ଘର ଭିତର ଆଉ ତାଙ୍କ କାର୍ଯ୍ୟକଳାପ ପରିଷ୍କାର ଦେଖି ହେଉଥାଏ । ଆଲମିରା ଉପରେ ଥିବା ମହମବତି ଦି'ଟା ସେ ଜଳାଇଲେ । ତା'ପରେ ଯାଇ ଗାଲିଚାର ଗୋଟେ କ'ଣ ଓଲଟାଇଲେ । ଲଇଁପଡ଼ି ଖଣ୍ଡେ ଚାରିକଣିଆ ପଟା ଉଠାଇଲେ ; ମିସ୍ତ୍ରିମାନେ ଗ୍ୟାସ୍ ପାଇପ୍‌ର ଯୋଡ଼ଣ ଜାଗା ଦେଖିବା ପାଇଁ ସେଠି ଏମିତି ଖଣ୍ଡେ ଖଣ୍ଡେ ପଟା ଦିଆଯାଇଥାଏ । ଏ ଖଣ୍ଡ ରୋଷେଇଘରକୁ ଯାଇଥିବା ପାଇପ୍‌ର ଯୋଡ଼ଣ ଜାଗାରେ ଥିଲା । ଏଇ ଜାଗାରୁ ସେ ଛୋଟ କାଗଜବିଡ଼ାଟା ବାହାରକଲେ, ପଟାଟା ରଖିଦେଇ ଗାଲିଚାଟାକୁ ପୁଣି ସଜାଇଦେଲେ । ତା'ପରେ ଆଲୁଅ ଲିଭାଇଦେଇ ବାହାରକୁ ଆସିଲାମାତ୍ରେ ସିଧା ମୋ ହାବୁଡ଼େ ପଡ଼ିଲେ । ସେତେବେଳକୁ ମୁଁ ଝରକା ବାହାର ପାଖରେ ଅପେକ୍ଷା କରି ରହିସାରିଥିଲି ।

ମୁଁ ତାଙ୍କୁ ଯେତେଟା ଦୁର୍ବୃତ୍ତ ବୋଲି ଭାବିଥିଲି, ସେ ତା'ଠୁ ବହୁତ ବେଶୀ । ସେ ଛୁରୀଟା ଧରି ସିଧା ମୋ ଆଡ଼କୁ ଧାଇଁଆସିଲେ । ମୋ ଆଙ୍ଗୁଠି ଗୋଟେ ଜାଗାରେ କଟିଗଲା । ଦି'ଥର ମୁଁ ତାଙ୍କୁ ତଳେ ପକାଇଦେଲି, ତା'ପରେ ଯାଇ ଆୟତ୍ତ କଲି । ଆମର ଧସ୍ତାଧସ୍ତି ସରିଲାପରେ ସେ ମୋ କଥା ମାନି କାଗଜଗୁଡ଼ା ଦେଇଦେଲେ । କାଗଜ ପାଇବାପରେ ମୁଁ ତାଙ୍କୁ ଛାଡ଼ିଦେଲି ; କିନ୍ତୁ

ଆଜି ସକାଳେ ମୁଁ ସବୁକଥା ଟେଲିଗ୍ରାମ୍ କରି ଫୋର୍ବସ୍‌ଙ୍କୁ ଜଣାଇଦେଇଛି । ଯଦି ସେ ଚଞ୍ଚଳ କାମ କରି ତାଙ୍କ ଶିକାର ଧରିପାରନ୍ତି ତେବେ ଭଲ । ଯଦି ସେ ଆସିଲାବେଳକୁ ଶିକାର ଖସିଯାଇଥାଏ, ତେବେ ସରକାରଙ୍କ ପାଇଁ ସେ ବି ଭଲ । ମୁଁ ଭାବୁଛି, କେଶ୍‌ଟା ପୋଲିସ୍ କୋର୍ଟକୁ ଯିବା ଲର୍ଡ଼ ହୋଲଡ୍ ହର୍ଷ୍ଟ କିମ୍ବା ମିଷ୍ଟର୍ ପର୍‌ସି ଫେଲ୍‌ପସ୍ କେହି ଇଚ୍ଛା କରିବେ ନାହିଁ ।''

ଧଇଁସଇଁ ହୋଇ ଫେଲ୍‌ପସ୍ କହିଲା, ''ହେ ଭଗବାନ୍ ! ତା'ହେଲେ ଏଇ ଦଶ ସପ୍ତାହ କାଳ କାଗଜଗୁଡ଼ା ମୋରି ରୁମ୍‌ରେ ମୋ ପାଖେ ପାଖେ ଥିଲା ?''

''ନିଶ୍ଚୟ ।''

''ଆଉ ଜୋସେଫ୍ ହେଲା ସୟତାନ ଚୋର ।''

''ହୁଁ, ଜୋସେଫ୍‌ର ବାହାର ଚେହେରା ଦେଖି ଜଣେ ତାକୁ ଯାହା ଭାବିବ, ସେ ତା' ନୁହେଁ । ତା ଚରିତ୍ର ବଡ଼ ସାଂଘାତିକ । ଆଜି ସକାଳେ ତା'ଠୁ ଯାହା ଶୁଣିଲି, ସେଥିରୁ ଜାଣିଲି ସେ ଜୁଆଖେଳରେ ଅନେକ କ୍ଷତିରେ ପଡ଼ିଛି । ତାକୁ ପୂରଣ କରିବା ପାଇଁ ସେ ସବୁକିଛି କରିପାରେ । ଲୋକଟା ଅତି ସ୍ୱାର୍ଥପର । ତେଣୁ ଯେତେବେଳେ ଗୋଟେ ସୁଯୋଗ ପାଇଲା, ସେ ତା' ଭଉଣୀର ସୁଖଶାନ୍ତି କିମ୍ବା ଆପଣଙ୍କ ସୁନାମ ବୁଡ଼ାଇଦେବାକୁ ପଛେଇଲା ନାହିଁ ।''

ପର୍‌ସି ପୁଣି ଚଉକିରେ ବସିପଡ଼ିଲା । କହିଲା, ''ମୋ ମୁଣ୍ଡ ବୁଲାଇଦେଉଛି । ଆପଣଙ୍କ କଥା ମୋତେ ଚକିତ କରିଦେଉଛି ।''

ହୋମ୍‌ସ ଶିକ୍ଷାଦେଲାପରି ଭଙ୍ଗୀରେ କହିଲେ, ''ଆପଣଙ୍କ କେଶ୍‌ରେ ପ୍ରଧାନ ଅସୁବିଧା ହେଲା ଅନେକଗୁଡ଼ାଏ ତଥ୍ୟ । ଯେଉଁଟା ଗୁରୁତ୍ୱପୂର୍ଣ୍ଣ, ସେଟା ଅପ୍ରାସଙ୍ଗିକ ତଥ୍ୟଦ୍ୱାରା ଘୋଡ଼େଇ ହୋଇଗଲା । ଆମକୁ ଯାହାସବୁ ତଥ୍ୟ ମିଳିଲା, ସେଥିରୁ ଯେଉଁଗୁଡ଼ା ଦରକାର ଆମକୁ ତାକୁ ବାଛି ଠିକ୍ କରିବାକୁ ହେଲା । ତା'ପରେ ତାକୁ ସଜାଇ ଏଇ ଘଟଣାବଳୀ ଗଢ଼ିବାକୁ ହେଲା । ମୁଁ ପ୍ରଥମରୁ ହିଁ ଜୋସେଫ୍‌କୁ ସନ୍ଦେହ କରିଥିଲି । କାରଣ ସେଦିନ ରାତିରେ ଆପଣ ତା' ସାଥିରେ ଘରକୁ ଫେରିବେ ବୋଲି ଠିକ୍ କରିଥିଲେ । ସେ ବୈଦେଶିକ ବ୍ୟାପାର ଅଫିସ୍ ଭଲଭାବେ ଜାଣେ । ତେଣୁ ଫେରିଲାବେଳେ ସେ ଆପଣଙ୍କୁ ଡାକିବା ପାଇଁ ସେଠିକି ଯିବା ସ୍ୱାଭାବିକ । ଯେତେବେଳେ ଆପଣଙ୍କଠାରୁ ଶୁଣିଲି, କେହି ଜଣେ ଆପଣଙ୍କ ଶୋଇବାଘରେ ପଶିବାକୁ ଖୁବ୍ ବ୍ୟଗ୍ର, ମୋର

ଆହୁରି ସନ୍ଦେହ ହେଲା । କାରଣ ସେ ଘରେ ଜୋସେଫ୍ ବ୍ୟତୀତ ଅନ୍ୟ କେହି କିଛି ଲୁଚାଇ ରଖିପାରିବ ନାହିଁ । ଆପଣ କହିଥିଲେ ଯେ, ଡାକ୍ତରଙ୍କ ସାଥିରେ ଆପଣ ଆସିବା ପରେ ଜୋସେଫ୍‌କୁ ସେ ଘରୁ ବାହାର କରିଦିଆଗଲା । ତେଣୁ ମୋ ସନ୍ଦେହ ନିଶ୍ଚିତ ହେଲା । ବିଶେଷତଃ ଆପଣଙ୍କ ରୁମ୍‌ରେ ପଶିବା ପାଇଁ ପ୍ରଥମ ଚେଷ୍ଟା ହେଲା ଦିନ ନର୍ସ ନଥିଲା । ସେଥିରୁ ଜଣାଗଲା ଲୋକଟା ଆପଣଙ୍କ ଘର ବିଷୟରେ ସବୁ କଥା ଭଲଭାବରେ ଜାଣେ ।''

''ମୁଁ କେଡ଼େ ଅନ୍ଧ ବନିଯାଇଥିଲି ।''

''କେଶ୍‌ଟାର ଘଟଣା ମୁଁ ଯାହା ଠିକ୍ କରିଛି ଏଇଆ । ଏଇ ଜୋସେଫ୍ ଚାର୍ଲସ୍ ଷ୍ଟ୍ରୀଟ୍ ଦରଜାବାଟେ ଅଫିସରେ ପଶିଛି । ଅଫିସ୍‌ର ସବୁ ତାକୁ ଜଣା । ଆପଣ କଫି ପାଇଁ ଆପଣଙ୍କ ରୁମ୍ ଛାଡ଼ିଲାକ୍ଷଣି ସେ ଯାଇ ସିଧା ସେଠି ପହଞ୍ଚିଛି । ସେଠି କାହାକୁ ନଦେଖି ସେ ବେଲ୍‌ଟା ବଜାଇଛି । ସେଇ ମୁହୂର୍ତ୍ତରେ ଟେବୁଲ ଉପରେ ଥିବା କାଗଜ ଉପରେ ତାର ଦୃଷ୍ଟି ପଡ଼ିଛି । କାଗଜଟାରେ ଆଖିପକାଇଲାମାତ୍ରେ ସେ ଜାଣିଛି ଯେ କାଗଜଟା ଅତି ମୂଲ୍ୟବାନ ଦଲିଲ । ଭାଗ୍ୟକୁ ଏଟା ତା' ହାତମୁଠାରେ । ପଲକମାତ୍ରେ ସେ ତାକୁ ପକେଟ୍‌ରେ ପୂରାଇ ଚାଲିଯାଇଛି । ଆପଣ ଜାଣନ୍ତି ଯେ ଜଗୁଆଳି ଆପଣଙ୍କୁ ବେଲ୍ କଥା କହିଲାବେଳକୁ କିଛି ସମୟ ବିତିଯାଇଥିଲା । ସେତିକି ସମୟ ଭିତରେ ଖସି ଚାଲିଯିବାକୁ ଚୋରକୁ ସୁବିଧା ମିଳିଗଲା ।

ସେ ସାଙ୍ଗେ ସାଙ୍ଗେ ଯେଉଁ ଟ୍ରେନ୍ ପାଇଛି ସେଥିରେ ଓକିଙ୍ଗ୍ ଚାଲିଯାଇଛି । ସେଠି କାଗଜଟା ପରୀକ୍ଷା କରି ଦେଖିଛି ଯେ ତା' ଅତି ମୂଲ୍ୟବାନ । ତେଣୁ ଯେଉଁ ଜାଗାଟାକୁ ସେ ନିରାପଦ ବୋଲି ଭାବିଛି ସେଠି ତାକୁ ଲୁଚାଇଦେଇଛି । ତା'ର ଉଦ୍ଦେଶ୍ୟ ଥିଲା ସୁବିଧା ଦେଖି ଦିନେ ଦି'ଦିନ ଭିତରେ ତାକୁ ନେଇ ଫରାସୀ ଦୂତାବାସ କିମ୍ବା ଅନ୍ୟ ଯେଉଁଠୁ ଭଲ ପଇସା ମିଳିବ ସେଠି ଦେଇଦେବ । ତା'ପରେ ହଠାତ୍ ଆପଣ ଫେରିଲେ ଏବଂ ତାକୁ ସେ ଘରୁ ବାହାରିଯିବାକୁ ପଡ଼ିଲା । ସେଇ ସମୟଠାରୁ ସେ ଘର ଭିତରେ ସବୁବେଳେ ଅନ୍ତତଃ ଆପଣ ଦି'ଜଣ ରହିଲେ; ତେଣୁ ଆଉ ତା'ର ଏ ଧନ ନେଇଯିବାର ସୁବିଧା ପାଇଲାନାହିଁ । ଏ ପରିସ୍ଥିତି ତାକୁ ନିଶ୍ଚୟ ପାଗଳ କରିଦେଇଥିବ । ଶେଷରେ ସେ ଦେଖିଲା ସୁଯୋଗ ଆସିଯାଇଛି । ସେ ଦଲିଲଟା ଚୋରି କରି ନେଇଯିବାକୁ ଚେଷ୍ଟା କରିଛି । କିନ୍ତୁ ଆପଣ ଚେଇଁଥିବାରୁ ସବୁ ଭଣ୍ଡୁର

ହୋଇଯାଇଛି । ଆପଣଙ୍କର ମନେଥିବ, ସେଦିନ ରାତି ଆପଣ ଔଷଧ ଖାଇ ନଥିଲେ ।''

''ହଁ, ମୋର ମନେପଡୁଛି ।''

''ମୁଁ ଭାବୁଛି ସେ ଔଷଧଟାରେ କିଛି ନିଶା ଜିନିଷ ମିଶାଇବାର ବ୍ୟବସ୍ଥା କରିଥିବ । ତେଣୁ ଆପଣ ଅଚେତ ହୋଇ ଶୋଇଥିବେ ବୋଲି ତା'ର ଦୃଢ଼ବିଶ୍ୱାସ ଥିଲା । ମୁଁ ଜାଣିଲି ଯେ କେତେବେଳେ ସୁବିଧା ପାଇଲେ ସେ ପୁଣି ଚେଷ୍ଟା କରିବ । ଆପଣ ସେ ଘର ଛାଡ଼ି ଆସିବାରୁ ତାକୁ ପୁଣି ସୁଯୋଗ ମିଳିଗଲା । ମୁଁ ମିସ୍ ହାରିସନ୍‌ଙ୍କୁ ଦିନସାରା ସେଠି ବସିରହିବାକୁ କହିଲି । ତେଣୁ ଆମେ ଫେରିବା ବୋଲି ସେ ମୋତେ ସନ୍ଦେହ କରିବ ନାହିଁ । ତା'ପରେ ବାଟ ସଫା ଅଛି ବୋଲି ତାକୁ ଧାରଣା ଦେଇ ମୁଁ ଜଗି ରହିଲି । ମୁଁ ଜାଣିଥିଲି, କାଗଜଗୁଡ଼ା ବୋଧହୁଏ ସେଇ ରୁମ୍‌ରେ ଥିବ । କିନ୍ତୁ ଘରଟାସାରା ଟିକିନିଖି କରି ଖୋଜିବା ମୋର ଇଚ୍ଛା ନଥିଲା; ତେଣୁ ଲୁଚାଇଥିବା ଜାଗାରୁ କାଗଜ ବାହାର କରିବାକୁ ମୁଁ ତାକୁ ସୁବିଧା ଦେଲି । ତା'ଦ୍ୱାରା ମୁଁ ଅନେକ ପରିଶ୍ରମରୁ ବଞ୍ଚିଗଲି । ଆଉ କିଛି ବୁଝିବାର ଅଛି ?''

ମୁଁ ପଚାରିଲି, ''ପ୍ରଥମଥର ସେ ଝରକା ବାଟେ ପଶିବାକୁ ଚେଷ୍ଟା କଲା କାହିଁକି ? ଦରଜାବାଟେ ତ ଯାଇପାରିଥାନ୍ତା ?''

''ଦରଜା ପାଖକୁ ଯିବାପାଇଁ ତାଙ୍କୁ ସାତବଖରା ଶୋଇବାଘର ଭିତରଦେଇ ଯିବାକୁ ପଡ଼ିଥାନ୍ତା; ଏହାଦ୍ୱାରା ବରଂ ଅତି ସହଜରେ ସେ ପଡ଼ିଆକୁ ବାହାରିଯାଇ ପାରିବ । ଆଉ କିଛି ?''

ଫେଲ୍‌ପସ୍ ପଚାରିଲା, ''ଆପଣ ତା'ହେଲେ କହୁଛନ୍ତି ମୋତେ ମାରିଦେବାର ଉଦ୍ଦେଶ୍ୟ ତା'ର ନଥିଲା ? ଛୁରୀଟା କେବଳ ଝରକା ଖୋଲିବା ପାଇଁ ?''

ହୋମ୍‌ସ ଉତ୍ତର ଦେଲେ, ''ତା' ହୋଇପାରେ । ମୁଁ ନିଶ୍ଚିତ ଭାବରେ କେବଳ ଏତିକି କହିବି ଯେ ଜୋସେଫ୍ ହାରିସନ୍ ଏମିତି ଜଣେ ଭଦ୍ରଲୋକ, ଯାହାଙ୍କ ଦୟା ବା କରୁଣାକୁ ବିଶ୍ୱାସ କରିବାକୁ ମୁଁ ମୋଟେ ରାଜି ନୁହେଁ ।''



## ଶେଷ ସମସ୍ୟା

ମୋ ବନ୍ଧୁ ସେରଲକ୍ ହୋମ୍‌ସଙ୍କ ଅସାଧାରଣ ପ୍ରତିଭା ବର୍ଣ୍ଣନା କରିବା ପାଇଁ ମୁଁ ଏ ବିଷୟଟା ଲେଖିବାକୁ କଲମ ଧରିଲାବେଳକୁ ମୋ ହୃଦୟ କାନ୍ଦି ଉଠୁଛି । ତାଙ୍କ ସାଥିରେ ମୋର ପରିଚୟ ହେଲା ପରେ, ତାଙ୍କ ସାଙ୍ଗରେ ରହି ଯେଉଁ ଅଦ୍ଭୁତ ଅନୁଭୂତି ହୋଇଛି ସେସବୁକୁ ମୁଁ 'ରକ୍ତ ସଙ୍କେତ'ଠାରୁ ଆରମ୍ଭ କରି 'ନୌବାହିନୀ ସନ୍ଧିପତ୍ର' ପର୍ଯ୍ୟନ୍ତ ବିଭିନ୍ନ ଘଟଣା ପ୍ରକାଶ କରିଛି । ଏଇ ଶେଷ କେଶ୍‌ରେ ତାଙ୍କ ଅନୁଶୀଳନ ଯୋଗୁଁ ଗୋଟେ ବିରାଟ ଆନ୍ତର୍ଜାତୀୟ ଗଣ୍ଡଗୋଳ ବନ୍ଦ ହୋଇଗଲା । ସେଇଠି ତାଙ୍କ କେଶ୍ ଲେଖା ଶେଷ କରିବା ମୋର ଇଚ୍ଛାଥିଲା । ଯେଉଁ ଘଟଣା ମୋ ଜୀବନକୁ ଶୂନ୍ୟ କରିଦେଲା ସେ ବିଷୟ, ସେ ଘଟଣା ସମ୍ବନ୍ଧରେ କିଛି କହିବା ମୋର ଉଦ୍ଦେଶ୍ୟ ନଥିଲା; କିନ୍ତୁ ଏବେ ତାଙ୍କ ଭାଇ କର୍ଣ୍ଣେଲ୍ ଜେମ୍‌ସ ମୋରିଆର୍‌ଟିଙ୍କଠାରୁ କେତେଖଣ୍ଡ ଚିଠି ପାଇଲି । ତେଣୁ ଲୋକଙ୍କ ଆଗରେ ସଠିକ ଘଟଣାଟା ପ୍ରକାଶ କରିବାଛଡ଼ା ମୋର ଅନ୍ୟ ଉପାୟ ନାହିଁ । ଘଟଣାର ପ୍ରକୃତ ସତ୍ୟ ମୁଁ ଜାଣେ । ଏବେ ତାକୁ ଲୁଚେଇ ରଖି କିଛି ଲାଭ ନାହିଁ । ମୁଁ ଯାହା ଜାଣେ ମୋଟେ ତିନିଟା ଖବରକାଗଜରେ ଏହା ପ୍ରକାଶ ପାଇଥିଲା; କିନ୍ତୁ ସେସବୁ ଅତି ସଂକ୍ଷିପ୍ତ ଭାବରେ । ଏବେ ପ୍ରଥମ ଥର ପାଇଁ ମୁଁ ପ୍ରକାଶ କରୁଛି । ସେର୍‌ଲକ୍ ହୋମ୍‌ସ ଆଉ ପ୍ରଫେସର ମୋରିଆର୍‌ଟିଙ୍କ ଭିତରେ କ'ଣ ଘଟିଥିଲା ।

ମୋ ବିବାହ ପରେ ମୁଁ ଡାକ୍ତରୀ ବ୍ୟବସାୟ ଆରମ୍ଭ କରିଦେଲି । ସେର୍‌ଲକ୍ ହୋମ୍‌ସ ଆଉ ମୋ ଭିତରେ ଥିବା ସମ୍ବନ୍ଧ ଆହୁରି ନିବିଡ଼ ହେଲା । ତାଙ୍କ ଅନୁସନ୍ଧାନ ପାଇଁ ଯେତେବେଳେ ଜଣେ ସାଙ୍ଗ ଦର୍କାର ହେଉଥିଲା ସେ ବରାବର ମୋ ପାଖକୁ ଆସୁଥିଲେ, କିନ୍ତୁ ସେଟା ଧୀରେ ଧୀରେ କମିଗଲା । ଏବେ ମୁଁ ଦେଖୁଛି ୧୮୯୦ ମସିହାର ମୋଟେ ତିନୋଟି କେଶ୍‌ର ବିବରଣୀ ମୋ ପାଖରେ ଅଛି । ସେ ବର୍ଷ ଶୀତଦିନ ଆଉ ୧୮୯୧ ମସିହାର ବସନ୍ତ ଋତୁ ଆରମ୍ଭରେ ମୁଁ ଖବରକାଗଜରେ ଦେଖିବାକୁ ପାଇଲି ଯେ ସେ ଗୋଟେ ଖୁବ୍ ଗୁରୁତର କାମରେ ଫରାସୀ ସରକାରଙ୍କ ଦ୍ୱାରା ନିଯୁକ୍ତ ହୋଇଛନ୍ତି । ମୁଁ

ବି ହୋମ୍‌ସଙ୍କଠାରୁ ଦି'ଖଣ୍ଡ ଚିଠି ପାଇଥିଲି । ଚିଠି ଦି'ଟା ସେ ନାର୍‌ବୋନ୍ ନାଇମସ୍‌ରୁ ଲେଖିଥିଲେ । ସେଥିରୁ ଜାଣିଲି ଯେ ଫ୍ରାନ୍‌ସରେ ଅନେକ ଦିନ ଯାଏ ରହିପାରନ୍ତି । କିନ୍ତୁ ଏପ୍ରିଲ ମାସ ଚବିଶ ତାରିଖ ଦିନ ସଂଧ୍ୟାରେ ସେ ମୋ ଅଫିସ୍ ରୁମ୍ ଭିତରକୁ ପଶି ଆସିଲେ । ମୁଁ ଆଶ୍ଚର୍ଯ୍ୟ ହୋଇଗଲି । ମୋତେ ଜଣାଗଲା ସେ ଖୁବ୍ ଦୁର୍ବଳ ଆଉ ମଳିନ ହୋଇଯାଇଛନ୍ତି । ମୁଁ ତାଙ୍କ ମୁହଁକୁ ପ୍ରଶ୍ନ କଲା ଭଙ୍ଗୀରେ ଚାହିଁ ରହିଲି । ତା'ର ଉତ୍ତରରେ ସେ କହିଲେ, ''ହଁ, ମୁଁ ଏ ଭିତରେ ଅନେକ ବେଶି ପରିଶ୍ରମ କରିଛି । ଆଚ୍ଛା, ଝରକାଗୁଡ଼ା ବନ୍ଦ କରିବାରେ ତୁମର କିଛି ଆପତ୍ତି ଅଛି ?''

ସେ କାନ୍ଥକଡ଼େ ବୁଲିଯାଇ ଝରକା ବନ୍ଦ କରିଦେଲେ । ଟେବୁଲ୍ ଉପରେ ଯେଉଁ ବତିଟା ଜାଳି ମୁଁ ପଢୁଥିଲି ଘର ଭିତରେ କେବଳ ସେତିକି ଆଲୁଅ ।

ମୁଁ ପଚାରିଲି, ''ତୁମେ କ'ଣ କିଛି ଭୟ କରୁଛ ?''

''ହଁ ।''

''କାହାକୁ ଭୟ ?''

''ଏୟାର ଗନ୍‌କୁ ।''

''ଏ କ'ଣ କହୁଛ ତୁମେ ହୋମ୍‌ସ ?''

''ତୁମେ ମୋତେ ଭଲଭାବେ ଜାଣ ୱାଟ୍‌ସନ୍ । ମୁଁ କେବେ ବିଚଳିତ ହେବା ଲୋକ ନୁହେଁ । ତଥାପି ବିପଦକୁ ବେଖାତିର୍ କରିବାଟା ସାହସିକତା ନୁହେଁ, ବରଂ ନିର୍ବୋଧତା । ମୋତେ ଗୋଟେ ଦିଆସିଲି ଦେଇପାରିବ ?'' ସେ ସିଗାରେଟ୍ ଖଣ୍ଡେ ଟାଣି ଟିକିଏ ଆରାମ ହେଲାପରି ଜଣାଗଲା । ପୁଣି କହିଲେ, ''ଏତେ ଡେରିରେ ଆସି ତୁମକୁ ହଇରାଣ କଲି, କ୍ଷମା କରିବ । ତା'ଛଡ଼ା ତୁମକୁ ଅନୁରୋଧ, ତୁମ ବଗିଚା ପଛପାଖ କାନ୍ଥ ଡେଇଁ ଏଠୁ ଚାଲିଯିବାକୁ ମୋତେ ଅନୁମତି ଦେବେ ।''

''କିନ୍ତୁ ଏସବୁର ଅର୍ଥ କ'ଣ ?'' ସେ ତାଙ୍କ ହାତଟା ମୋ ଆଡ଼କୁ ବଢ଼ାଇଦେଲେ । ଦେଖିଲି ଦି'ଟା ଆଙ୍ଗୁଠି ଫାଟିଯାଇ ରକ୍ତ ବୋହୁଛି । ସାମାନ୍ୟ ହସି ସେ କହିଲେ, ''ଏଇଟା କିଛି ନୁହେଁ ବୋଲି ତୁମେ କେବେ କହିପାରିବ ନାହିଁ, ବରଂ ଏତିକିରେ ଜଣେ ଲୋକର ହାତଟା ଅକର୍ମଣ୍ୟ ହୋଇଯିବ । ହଁ, ମିସେସ୍ ୱାଟ୍‌ସନ୍ ଘରେ ଅଛନ୍ତି ?''

''ନା, ସେ ଜଣେ ବନ୍ଧୁ ଘରକୁ ଯାଇଛନ୍ତି ।''

''ତା'ହେଲେ ତୁମେ ଏକୁଟିଆ ?''

''ହଁ, ଏକୁଟିଆ ।''

''ତା'ହେଲେ ତୁମେ ମୋ ସାଥିରେ ସପ୍ତାହକ ପାଇଁ ଗୋଟେ ଜାଗାକୁ ଯିବାରେ କିଛି ଅସୁବିଧା ହେବ ନାହିଁ ।''

''କୁଆଡ଼େ ?''

''ଯେଉଁଠିକି ହେଲେ ବି ମୋ ପାଇଁ ସବୁ ସମାନ ।''

ଏସବୁ କଥା ମୋତେ କେମିତି ଆଶ୍ଚର୍ଯ୍ୟ ଲାଗିଲା । କିଛି ଉଦ୍ଦେଶ୍ୟ ନଥାଇ କୁଆଡ଼େ ବୁଲିଯିବା ହୋମ୍‌ସଙ୍କର ସ୍ୱଭାବ ନୁହେଁ । ତାଙ୍କ ମୁହଁର ଭାବରୁ ଜାଣିଲି, କୌଣସି କାରଣରୁ ସେ ଖୁବ୍ ଉଦ୍‌ବିଗ୍ନ ହୋଇପଡ଼ିଛନ୍ତି । ମୁଁ ପୁଣି ପ୍ରଶ୍ନ କଲା ଭଙ୍ଗୀରେ ତାଙ୍କ ମୁହଁକୁ ଚାହିଁ ରହିଲି । ସେ ଆଣ୍ଠୁ ଉପରେ କହୁଣି ଦି'ଟା ଥୋଇ ଘଟଣାଟା କହିଲେ ।

''ତୁମେ ବୋଧହୁଏ ପ୍ରଫେସର ମୋରିଆର୍‌ଟିଙ୍କ ନାଁ ଶୁଣିନାହଁ ?''

''ନା, କେବେ ଶୁଣିନାହିଁ ।''

''ସେ ଜଣେ ପ୍ରତିଭାଶାଳୀ ଲୋକ, ଆଉ ସେଇ ହେଲା ଆଶ୍ଚର୍ଯ୍ୟ । ସେ ସାରା ଲଣ୍ଡନ ସହରରେ ପରିବ୍ୟାପ୍ତ, ଅଥଚ କେହି ତାଙ୍କ ନା ଶୁଣିନାହିଁ । ଅପରାଧ ରେକର୍ଡ଼ରେ ତାଙ୍କ ନାଁଟା ସବୁଠୁ ଉପରେ । ତୁମକୁ ସତ କହୁଛି ୱାଟ୍‌ସନ୍, ମୁଁ ଯଦି ସେ ଲୋକଟାକୁ ଜିଣିପାରିବି, ସମାଜ ତା' ଦାଉରୁ ମୁକ୍ତ କରିପାରିବି, ତେବେ ଜାଣିବି ଯେ ମୁଁ ଚରମସୀମାରେ ପହଞ୍ଚିପାରିଛି । ତା'ପରେ ଅନ୍ୟ କୌଣସି ସରଳ ବ୍ୟବସାୟ ଆରମ୍ଭ କରିବି । ଏବେ ଯେଉଁ କେଶ୍‌ରେ ମୁଁ ସ୍କାଣ୍ଡିନେଭିଆର ରାଜପରିବାର ଆଉ ଫରାସୀ ସରକାରଙ୍କୁ ସାହାଯ୍ୟ କରିଥିଲି, ତା'ପାଇଁ ମୋର ଆର୍ଥିକ ଅବସ୍ଥା ଯାହା, ମୁଁ ଆରାମ୍‌ରେ ରହି ମୋ ରାସାୟନିକ ଗବେଷଣାରେ ଲାଗିପାରିବି । କିନ୍ତୁ ଯେତେବେଳେ ଦେଖିଲି ପ୍ରଫେସର ମୋରିଆର୍‌ଟି ପରି ଲୋକ ନିର୍ବିଘ୍ନରେ ଲଣ୍ଡନ ସହରରେ ଘୂରିବୁଲୁଛି ମୁଁ ତୁନି ହୋଇ ରହିପାରିଲି ନାହିଁ, ବିଶ୍ରାମ ନେଇପାରିଲି ନାହିଁ ।''

''ସେ କ'ଣ କରିଛି ?''

''ତା'ର ଜୀବନ ଅତି ଅସାଧାରଣ । ସଂଭ୍ରାନ୍ତଘରେ ତା'ର ଜନ୍ମ ଆଉ ସେ ଉଚ୍ଚଶିକ୍ଷିତ । ଗଣିତରେ ତା'ର ଅସାଧାରଣ ଜ୍ଞାନ । ସାରା ଇଉରୋପରେ ତା'ର ଉଚ୍ଚପ୍ରଶଂସା । ଏତେ କମ୍ ବୟସରେ ସେ ଗୋଟେ ବିଶ୍ୱବିଦ୍ୟାଳୟରେ ଗଣିତ ଅଧ୍ୟାପକ ହୋଇପାରିଲା । ସମସ୍ତେ ଭାବିଲେ ତା'ର ଭବିଷ୍ୟତ ଅତି ଉଜ୍ଜ୍ୱଳ । କିନ୍ତୁ ଲୋକଟାର ଜନ୍ମଗତ ପୈଶାଚିକ ପ୍ରବୃତ୍ତି ଥିଲା । ଅପରାଧ ତା' ରକ୍ତରେ ମିଶି ରହିଥିଲା । ତାହା କମିବା ପରିବର୍ତ୍ତେ ସେଟା ବଢ଼ିଚାଲିଲା । ତା'ର ଅସାଧାରଣ ବୁଦ୍ଧି ଯୋଗୁଁ ସେ ଅତି ଭୟଙ୍କର ହୋଇଉଠିଲା । ବିଶ୍ୱବିଦ୍ୟାଳୟ ସହରରେ ତା' ବିରୁଦ୍ଧରେ ନାନାକଥା ଶୁଣାଗଲା । ପରିଶେଷରେ ସେ ବାଧ୍ୟ ହୋଇ ତା'ପଦରୁ ଇସ୍ତଫା ଦେଲା । ତା'ପରେ ଲଣ୍ଡନକୁ ଆସି ସେ ଜଣେ ଶିକ୍ଷକଭାବେ କାମ କଲା । ତା' ବିଷୟରେ ଲୋକେ ଏତିକି ଜାଣନ୍ତି । କିନ୍ତୁ ମୁଁ ଏବେ ତୁମକୁ ଯାହା କହିବାକୁ ଯାଉଛି, ତା' ମୁଁ ନିଜେ ଆବିଷ୍କାର କରିଛି ।''

''ତୁମେ ତ ଜାଣ ୱାଟ୍‌ସନ୍, ଲଣ୍ଡନରେ ବଡ଼ ବଡ଼ ଅପରାଧୀମାନଙ୍କୁ ମୁଁ ଯେତେ ଜାଣେ, ଅନ୍ୟ କେହି ସେତେ ଜାଣନ୍ତି ନାହିଁ । ଲଣ୍ଡନରେ କେତେଗୁଡ଼ାଏ ଗୁପ୍ତ ଅନୁଷ୍ଠାନ ଅଛି । ସେମାନେ ଆଇନ ବିରୁଦ୍ଧରେ ଯାଇ ଅପରାଧୀମାନଙ୍କୁ ଘୋଡ଼ାଇ ରଖନ୍ତି । ଅନେକ ଦିନରୁ ମୁଁ ଏକଥା ଜାଣିପାରିଛି । ଏଇ ଲଣ୍ଡନରେ ଠକାମି, ଡକାୟତି, ହତ୍ୟା ଆଦି କେଶ୍ ଘଟିଯାଇଛି । କିନ୍ତୁ ପୋଲିସ୍ ତାକୁ ବାହାର କରିପାରିନାହିଁ । ସେସବୁରେ ମୋର ସହଯୋଗ କେହି ଚାହିଁନାହିଁ, କିନ୍ତୁ ମୁଁ ଅନୁଶୀଳନ କରି ଜାଣିପାରିଛି ଯେ ଏଇ ଗୁପ୍ତ ଅନୁଷ୍ଠାନର ସେଥିରେ ହାତ ଅଛି । ବର୍ଷ ବର୍ଷ ଧରି ତା'ର ଆବରଣ ଖୋଲିଦେବା ପାଇଁ ମୁଁ ଚେଷ୍ଟା କରିଛି । ଶେଷରେ ଗୋଟାଏ ସୂତ୍ର ପାଇ ମୁଁ ତା'ର ଅନୁସରଣ କଲି । ହଜାରଆଡ଼େ ବୁଲି ବୁଲି ଶେଷରେ ଭୂତପୂର୍ବ ପ୍ରଫେସର ମୋରିଆର୍ଟିର ଗାଣିତିକ ପ୍ରତିଭା ପାଖରେ ପହଞ୍ଚିଲି ।''

''ସେ ଅପରାଧ-ଜଗତର ନେପୋଲିଅନ । ଏ ସହରର ଯେତେ କେଶ୍ ବାହାରି ନ ପାରିଛି, ପ୍ରାୟ ସବୁଗୁଡ଼ାକର ସେ ସଂଗଠକ । ସେ ଖୁବ୍ ମେଧାବୀ, ଦାର୍ଶନିକ ଆଉ ଚିନ୍ତାଶୀଳ । ତା'ର ବୁଦ୍ଧି ଅତି ସୂକ୍ଷ୍ମ । ବୁଢ଼ିଆଣୀ ତା' ଜାଲ ମଝିରେ ଚୁପ୍‌ଚାପ୍ ବସିଲା ପରି ସେ ବସିଥାଏ, କିନ୍ତୁ ଜାଲର କେଉଁ ଖିଅ କେତେ ବାଟ ଲମ୍ୱିଛି ତାକୁ ଜଣା । ସେ ନିଜେ କିଛି କରେ ନାହିଁ - କେବଳ

ଯୋଜନା କରେ । ତାର ଅସଂଖ୍ୟ ସୁସଂଗଠିତ ଏଜେଣ୍ଟ ଅଛନ୍ତି । ଚୋରି, ଡକାୟତି, ଲୁଣ୍ଠନ ଆଦି କିଛି କରାଗଲେ ପ୍ରଥମେ ତା' କାନକୁ କଥାଟା ଯାଏ । ସେ ତା'ର ଯୋଜନା କରେ, ଆଉ ତା'ପରେ କାମଟା ହୁଏ । ତା' ଏଜେଣ୍ଟ ହୁଏତ ଧରାପଡ଼ିପାରେ । ତା'ର ଜାମିନ୍ ବା କେଶ୍ ଲଢ଼ିବା ପାଇଁ ଟଙ୍କା ଯଥେଷ୍ଟ ମିଳିଯାଏ । କିନ୍ତୁ ଯେ ମୂଳରେ ରହି ଏଜେଣ୍ଟମାନଙ୍କୁ କାମରେ ଲଗାଏ ସେ ମୋଟେ ଧରାପଡ଼େ ନାହିଁ । ମୁଁ ଅନୁଶୀଳନ ଦ୍ୱାରା ଏହା ଜାଣିପାରିଲି ଆଉ ତାକୁ ପଦାରେ ପକାଇବା ପାଇଁ ମୋର ସବୁ ଶକ୍ତି ଖଟାଇଲି ।''

''କିନ୍ତୁ ପ୍ରଫେସର ମହାଧୂର୍ତ୍ତ । ସେ ଏମିତି ସୁଚିନ୍ତିତ ଉପାୟରେ ନିଜକୁ ନିରାପଦ ରଖିଥିଲା ଯେ ମୁଁ ଯାହା କଲେ ବି ଅଦାଲତରେ ତାକୁ ଦୋଷୀ ସାବ୍ୟସ୍ତ କରିବା ପାଇଁ କୌଣସି ପ୍ରମାଣ ପାଇବା ସମ୍ଭବ ହେଲା ନାହିଁ । ତୁମେ ମୋର ଶକ୍ତି ଜାଣ ୱାଟ୍‌ସନ୍ । ତଥାପି ତିନିମାସ ପରେ ମୁଁ ଦେଖିଲି ଯେ ବୁଦ୍ଧିରେ ମୋ ସାଥିରେ ତାଲ ଦେବା ପରି ଗୋଟେ ପ୍ରତିଦ୍ୱନ୍ଦୀ ମୁଁ ହାବୁଡ଼ିଛି । ତା'ର ଚତୁରତାର ପ୍ରଶଂସା କରିବାକୁ ବାଧ ହେଲି । ଶେଷରେ ସେ ଗୋଟାଏ ଭୁଲ୍ କରି ବସିଲା - ଅତି ସାମାନ୍ୟ ଭୁଲ୍ । ମୁଁ ଗୋଟେ ସୁଯୋଗ ପାଇଗଲି । ସେଇଠୁ ଆରମ୍ଭ କରି ମୁଁ ତା' ଚାରିପାଖେ ଜାଲ ବିଛାଇ ଦେଇଛି, କେବଳ ତାକୁ ଜାଲ ଭିତରେ ବାନ୍ଧିବା ବାକି ଅଛି । ତିନିଦିନ ଭିତରେ ଆସନ୍ତା ସୋମବାର ଦିନ ସବୁ ଠିକ୍ ହୋଇଯିବ, ଆଉ ପ୍ରଫେସର ଏବଂ ତା' ଦଳର ମୁଖିଆ ମୁଖିଆ ସଭ୍ୟମାନେ ପୋଲିସ୍ ହାତରେ ପଡ଼ିବେ । ତା'ପରେ ଏ ଶତାବ୍ଦୀର ସବୁଠୁ ବଡ଼ ଅପରାଧର ବିଚାର ହେବ । ଚାଳିଶଟାରୁ ଅଧିକ ରହସ୍ୟର ଉଦ୍‌ଘାଟନ ହେବ, ସେ ସମସ୍ତଙ୍କ ଗଳାରେ ଫାଶ ଲାଗିବ । କିନ୍ତୁ ଆମେ ଯଦି ତରତର ହେବା, ସେମାନେ ଶେଷ ମୁହୂର୍ତ୍ତରେ ଆମ ହାତରୁ ଖସିଯାଇପାରନ୍ତି ।''

''ମୁଁ ଯଦି ସବୁକାମ ପ୍ରଫେସର ମୋରିଆର୍‌ଟିର ଅଜ୍ଞାତରେ କରିପାରିଥାନ୍ତି ତେବେ କିଛି ଅସୁବିଧା ନଥିଲା । କିନ୍ତୁ ସେ ଲୋକଟା ମୋ'ଠୁ ବୁଦ୍ଧିରେ ବଳିଗଲା । ମୁଁ ତାକୁ ଫାନ୍ଦରେ ପକାଇବାକୁ ଯାହା ପଦକ୍ଷେପ ନେଇଛି, ସେ ସବୁ ଜାଣିପାରିଛି । ସେ ମୋ ହାତରୁ ଖସିଯିବା ପାଇଁ ବାରମ୍ବାର ଚେଷ୍ଟା କରିଛି, କିନ୍ତୁ ମୁଁ ଅଧିକାଂଶ ସ୍ଥଳରେ ତାକୁ ଟପି ଯାଇଛି । ଆମ ଭିତରେ ଯେଉଁ ନୀରବ ପ୍ରତିଦ୍ୱନ୍ଦିତା ଚାଲିଛି ତା'ର ବିବରଣୀ ଯଦି ଲେଖାଯାଇପାରନ୍ତା, ତେବେ ଅନୁସନ୍ଧାନ ଇତିହାସରେ ସେ ଏକ ଚମକପ୍ରଦ ଲେଖା ହୁଅନ୍ତା । ମୁଁ କେବେ

କୌଣସି ଶତ୍ରୁ ପାଇଁ ଏତେ କଠିନ ପରିଶ୍ରମ କରିନାହିଁ । ସେ ଖୁବ୍ ତଳେ ବୁଡ଼ି ରହିଲା । ମୁଁ କିନ୍ତୁ ତା'ଠୁ ଆହୁରି ତଳକୁ ବୁଡ଼ିଲି । ଆଜି ସକାଳେ ମୁଁ ମୋର ଶେଷ ପଦକ୍ଷେପ ନେଇଛି । କାମଟା ଶେଷ କରିବା ପାଇଁ ଆଉ କେବଳ ତିନି ଦିନ ସମୟ ଦରକାର । ମୁଁ ମୋ ରୁମ୍‌ରେ ବସି ଏ ବିଷୟରେ ଚିନ୍ତା କରୁଥିଲି । ଏତିକିବେଳେ ଦରଜା ଖୋଲିଗଲା ଆଉ ନିଜେ ପ୍ରଫେସର ମୋରିଆର୍ଟି ମୋ ଆଗରେ ଆସି ଠିଆହେଲା ।''

''ମୋ ଛାତି ମୋଟେ ଦୁର୍ବଳ ନୁହେଁ । କିନ୍ତୁ ସତ କହୁଛି, ଯେଉଁ ଲୋକ କଥା ମୁଁ ଚିନ୍ତା କରୁଥିଲି ତାକୁ ମୋ ଘରେ ଦେଖି ଚମକିପଡ଼ିଲି । ତା'ର ଚେହେରା ମୋତେ ଜଣାଥିଲା, ବେଶ୍ ଡେଙ୍ଗା ଆଉ ପତଳା ଲୋକ । ଆଖି ଦି'ଟା ଖୋଳ ହୋଇ ମୁଣ୍ଡ ଭିତରେ ପଶିଯାଇଛି । ମୋ ଆଡ଼କୁ ଉଦ୍‌ଗ୍ରୀବ ହୋଇ ଚାହିଁ ରହିଲା । ଶେଷରେ କହିଲା, ''ମୁଁ ଯେତେଟା ଆଶା କରିଥିଲି ତୁମେ ସେତେଟା ଆଗେଇପାରିନାହଁ ଦେଖୁଛି । ହଁ, ପୋଷାକ ପକେଟ୍‌ରେ ଗୁଳିଭରା ପିସ୍ତଲ ରଖି ସେଥିରେ ଆଙ୍ଗୁଠି ମାରିବାଟା ବଡ଼ ବିପଦପୂର୍ଣ୍ଣ ।''

''କଥାଟା ହେଲା, ସେ ଘର ଭିତରକୁ ଆସିବା ମାତ୍ରେ ମୁଁ ବିପଦର ଆଶଙ୍କା କଲି । ତା'ର ଖସିଯିବାର ଏକମାତ୍ର ବାଟ ଥିଲା ମୋ ମୁହଁ ବନ୍ଦ କରିଦେବା । ତେଣୁ ମୁହୂର୍ତ୍ତକ ଭିତରେ ରିଭଲ୍‌ଭରଟା ଡ୍ରୟରରୁ ଆଣି ପକେଟରେ ପୂରାଇ ତା' ଆଡ଼କୁ ଲକ୍ଷ୍ୟ କରି ରଖିଥାଏ । ତା' କଥା ଶୁଣି ସେଟା ପକେଟ୍‌ରୁ ବାହାର କରି ଟେବୁଲ୍ ଉପରେ ରଖିଦେଲି । ତଥାପି ସେ ଆଖି ମିଟି ମିଟି କରି ହସୁଥାଏ । ତା' ଆଖିର ଭଙ୍ଗୀରୁ ମୁଁ ଭାବିଲି ପିସ୍ତଲଟା ହାତ ପାଖରେ ଥିବା ଦର୍କାର ।''

ସେ କହିଲା, ''ତୁମେ ତା'ହେଲେ ମୋତେ ଜାଣନାହିଁ ।'' ଉତ୍ତର ଦେଲି, ''ବରଂ ମୁଁ ତୁମକୁ ଭଲ ଭାବରେ ଜାଣେ । ହଉ ବସ । ଯଦି ତୁମର କିଛି କହିବାର ଅଛି, ମୁଁ ପାଞ୍ଚ ମିନିଟ୍ ସମୟ ଦେଇପାରେ ।''

''ମୋର ଯାହା କହିବା କଥା ସେସବୁ ତୁମେ ମନ ଭିତରେ ଜାଣିସାରିଲଣି ।''

''ତା'ହେଲେ ମୋର ଉତ୍ତର ମଧ୍ୟ ତୁମେ ବୋଧହୁଏ ମନେ ମନେ ଜାଣି ସାରିବଣି ।''

''ତମେ ଏଥିରେ ନିଶ୍ଚିତ ?''

''ନିଶ୍ଚୟ ।''

ସେ ତା' ପକେଟ୍‌ରେ ହାତ ପୂରାଇଲା । ମୁଁ ବି ଟେବୁଲ୍ ଉପରୁ ପିସ୍ତଲଟା ଉଠାଇ ଧରିନେଲି । କିନ୍ତୁ ସେ ପକେଟରୁ ଖାଲି ଗୋଟେ ନୋଟ୍ ବହି ବାହାର କଲା । ସେଥିରେ ସେ କେତେଗୁଡ଼େ ତାରିଖ ଟିପିଥିଲା । ସେଟା ଦେଖି ସେ କହିଲା, ''ତୁମେ ଜାନୁଆରୀ ଚାରି ତାରିଖରେ ମୋ ବାଟରେ ଠିଆ ହୋଇଥିଲ । ତେଇଶ ତାରିଖରେ ମୋତେ ଅସୁବିଧାରେ ପକାଇଛ, ଫେବୃୟାରୀ ମଝାମଝି ବି ମୋତେ ହଇରାଣ କରିଛ, ମାର୍ଚ୍ଚ ମାସ ଶେଷବେଳକୁ ମୋ ଯୋଜନା ତୁମ ଯୋଗୁଁ ବିଗିଡ଼ିଯାଇଛି, ଆଉ ଏବେ ଏପ୍ରିଲ ମାସ ଶେଷବେଳକୁ ତୁମେ ବରାବର ମୋ ପଛରେ ଏମିତି ଲାଗିଛ ଯେ ମୁଁ ହାତଗୋଡ଼ ବାନ୍ଧି ରହିଲା ପରି ହୋଇଯାଇଛି । ଏସବୁ ମୁଁ ଆଉ ସମ୍ଭାଳି ପାରିବିନାହିଁ ।''

''ମୁଁ ପଚାରିଲି, ତୁମର ଆଉ କିଛି କହିବାର ଅଛ ?''

''ତୁମେ ଏସବୁ ବନ୍ଦ କର ମିଷ୍ଟର ହୋମ୍‌ସ । ତୁମେ ଜାଣ, ତୁମକୁ ଏସବୁ ବନ୍ଦ କରିବାକୁ ହେବ ।''

''ଆସନ୍ତା ସୋମବାର ପରେ ।''

''ଆହା, ମୋର ଆଶା ତୁମପରି ଜଣେ ବୁଦ୍ଧିମାନ୍ ଲୋକ ନିଶ୍ଚୟ ଜାଣିପାରୁଥିବ, ଯାର ଶେଷଫଳ କେବଳ ଗୋଟାଏ । ତେଣୁ ତୁମର ଓହରିଯିବା ନିହାତି ଦର୍କାର । ତୁମେ ଏମିତି କାମ କରିବସିଛ ଯେ ଆମ ଆଗରେ କେବଳ ଗୋଟେ ମାତ୍ର ବାଟ ଅଛି । ଏ ଘଟଣାକୁ ତୁମେ ଏପରି ଅବସ୍ଥାକୁ ଆଣିଛ ଯେ, ମୋତେ ଅନେକ ମୁଣ୍ଡ ଖେଳାଇବାକୁ ପଡ଼ିଲାଣି । ତେଣୁ ଦୁଃଖର ସହ ମୁଁ କହୁଛି ଯାର ପ୍ରତିକାର କରିବାକୁ ମୁଁ ବାଧ୍ୟ ହେବି । ତୁମେ ହସୁଛ, କିନ୍ତୁ ମୁଁ କହୁଛି ଯା ନିଶ୍ଚୟ ହେବ ।''

''ବିପଦ ମୋ କାମର ଗୋଟେ ଅଙ୍ଗ ।''

''ଏଟା ବିପଦ ନୁହେଁ, ନିଶ୍ଚିତ ମୃତ୍ୟୁ । ତୁମେ କେବଳ ଜଣେ ବ୍ୟକ୍ତିବିଶେଷର ବାଟରେ ବାଧା ଦେଉନାହଁ, ଗୋଟାଏ ବିରାଟ ସଂଗଠନ ବାଟରେ ବାଧା ଦେଉଛ । ତୁମର ସବୁ ପ୍ରତିଭା ସତ୍ତ୍ୱେ ସେ ସଂଗଠନ କେଡ଼ ବ୍ୟାପକ ତୁମେ ଜାଣିବାକୁ ସମର୍ଥ ହୋଇନାହଁ । ତୁମେ ଦୂରେଇଯାଅ ମିଷ୍ଟର ହୋମ୍‌ସ । ତା'ନହେଲେ ପାଦତଳେ ଦଳି ହୋଇଯିବ ।''

ଉଠି ଠିଆହୋଇ ମୁଁ କହିଲି, ''ତୁମ ସାଥିରେ କଥାବାର୍ତ୍ତା କରି ମୁଁ ଅନ୍ୟ ଗୁରୁତର କାମରେ ହେଳା କରି ବସିଲଣି ।''

''ସେ ବି ଉଠି ଠିଆହୋଇ ଚୁପ୍‌ଚାପ୍ ମୋ ମୁହଁକୁ ଚାହିଁ ରହିଲା । ତା'ପରେ କହିଲା, ''ମନରେ ଦୁଃଖ ଆସୁଛି । କିନ୍ତୁ ମୁଁ ଯାହା କରିବାର କଲି । ତୁମର ପ୍ରତିଟି ଚାଲ୍ ମୁଁ ଜାଣେ । ସୋମବାର ପୂର୍ବରୁ ତୁମେ କିଛି କରିପାରିବ ନାହିଁ । ଏଟା ତୁମ ଆଉ ମୋ ଭିତରେ ଗୋଟିଏ ଦ୍ୱନ୍ଦ୍ୱଯୁଦ୍ଧ । ତୁମେ ମୋତେ କାଠଗଡ଼ାରେ ଠିଆ କରାଇବାକୁ ଆଶା କରିଛ । କିନ୍ତୁ ଜାଣିରଖ, ମୁଁ କାଠଗଡ଼ା ଭିତରକୁ ଯିବା ଲୋକ ନୁହେଁ । ତୁମେ ମୋତେ ବଳିଯିବାକୁ ଭାବୁଛ, କିନ୍ତୁ ପାରିବ ନାହିଁ । ତୁମେ ଯଦି ମୋତେ ଧ୍ୱଂସ କରିବାକୁ ଚାହୁଁଥାଅ, ତେବେ ମନେରଖ, ମୁଁ ବି ତୁମକୁ ଛାଡ଼ିବି ନାହିଁ ।''

''ତୁମେ ତ ଅନେକ କଥା କହିଗଲଣି, ମୁଁ ପଦେ କହୁଛି । ଯଦି ତୁମକୁ ଧ୍ୱଂସ କରିବାରେ ମୁଁ ନିଶ୍ଚିତ ଧ୍ୱଂସ ହୁଏ, ତେବେ ସାଧାରଣ ସ୍ୱାର୍ଥ ଦୃଷ୍ଟିରୁ ମୁଁ ଖୁସିରେ ଆତ୍ମବଳି ଦେବି ।''

''ସେଥିରୁ ତୁମେ ଧ୍ୱଂସ ହେବା କଥାଟାର ମୁଁ ପ୍ରତିଶ୍ରୁତି ଦେଇପାରେ, କିନ୍ତୁ ମୁଁ ଧ୍ୱଂସ ହେବା କଥା କହିପାରିବି ନାହିଁ ।'' ଏତିକି କହି ସେ ବୁଲିପଡ଼ି ଝଡ଼ପରି ଘରୁ ବାହାରିଗଲା ।

''ଏଇ ହେଲା ପ୍ରଫେସର ମୋରିଆର୍ଟି ସାଥିରେ ମୋର ଦେଖା । ମୁଁ ମାନୁଛି ତା'ପରେ ମୋ ମନଟା ଭାରି ଖରାପ ହୋଇଗଲା । ତା'କଥା ଜଣେ ସାଧାରଣ ଗୁଣ୍ଡାର କଥା ନୁହେଁ, ସେଥିରେ ନିଶ୍ଚୟ ଗୁରୁତ୍ୱ ଅଛି । ଅବଶ୍ୟ ତୁମେ କହିପାର, ତା'ବିରୁଦ୍ଧରେ ମୁଁ ପୋଲିସ୍‌ର ସାହାଯ୍ୟ ନ ନେଉଛି କାହିଁକି ? କାରଣ ମୁଁ ଜାଣେ ସେ ନିଜେ କିଛି କରିବ ନାହିଁ, ଯାହା କରିବେ ତା' ଏଜେଣ୍ଟମାନେ ।''

''ତୁମ ଉପରେ ତେବେ ଆକ୍ରମଣ ଆରମ୍ଭ ହୋଇଯାଇଛି ?''

''ବୁଝିଲ ୱାଟ୍‌ସନ୍ ପ୍ରଫେସର ମୋରିଆର୍ଟି ଯେମିତି ଲୋକ ସେ ତା ବାଟରୁ ସବୁ କଣ୍ଟା ସଫା କରିବାକୁ ପଛେଇବ ନାହିଁ । ମୁଁ ପ୍ରାୟ ଦୁଇ ପ୍ରହର ବେଳକୁ ଗୋଟେ କାମରେ ଅକ୍‌ସଫୋର୍ଡ଼ ଷ୍ଟ୍ରୀଟ୍‌କୁ ଯାଇଥିଲି । ସେଇ ରାସ୍ତାର ମୋଡ଼ ଉପରେ ଦି'ଟା ଘୋଡ଼ା ଯୋଚା ଗୋଟେ ଗାଡ଼ି ବିଜୁଳିବେଗରେ ମୋ ଉପରକୁ ମାଡ଼ି ଆସିଲା । ମୁଁ ଫୁଟ୍‌ପାଥକୁ ଡେଇଁପଡ଼ି ଜୀବନରକ୍ଷା କରିନେଲି ।

ଗୋଟେ ସେକେଣ୍ଡ ଡେରିହୋଇଥିଲେ କଥା ସରିଥିଲା । ମୁହୂର୍ତ୍ତକ ଭିତରେ ଗାଡ଼ିଟା ଆଗେଇଯାଇ କୁଆଡ଼େ ଅଦୃଶ୍ୟ ହୋଇଗଲା । ତା'ପରେ ମୁଁ ଫୁଟ୍‌ପାଥରେ ଚାଲି ଚାଲି ଆସିଲି । କିନ୍ତୁ କିଛି ବାଟ ଆସିଲାପରେ ଗୋଟେ ଘରର ଛାତ ଉପରୁ ଇଟାଟିଏ ମୋ ପାଦ ପାଖରେ ପଡ଼ି ଖଣ୍ଡ ଖଣ୍ଡ ହୋଇଗଲା । ମୁଁ ପୋଲିସ୍‌କୁ ଡାକି ଜାଗାଟା ତଲାସ କରି ଦେଖିଲି । ଛାତ ଉପରେ ଗୁଡ଼େ ଇଟା ପଡ଼ିଯାଇଥିବ । କିନ୍ତୁ ମୁଁ ପ୍ରକୃତ ଘଟଣା ଜାଣିପାରିଲି, ହେଲେ ତା' ପ୍ରମାଣ କରିବାକୁ ମୋ ପାଖରେ କିଛି ନାହିଁ । ତା'ପରେ ମୁଁ ଗୋଟେ ଗାଡ଼ିକରି ମୋ ଭାଇଙ୍କ ଘରେ ଯାଇ ପହଞ୍ଚିଲି । ସେଠି ସାରାଦିନ କଟେଇଦେଲି । ଏବେ ତୁମ ପାଖକୁ ଆସିଲି । ବାଟରେ ଗୋଟେ ଗୁଣ୍ଡା ମୋ ଉପରେ ଆକ୍ରମଣ କଲା । ମୁଁ ତାକୁ ଆକ୍ରମଣ କରି ତଳେ ପକେଇଦେଲି । ତା'ପରେ ପୋଲିସ ତାକୁ ଆରେଷ୍ଟ କରିନେଇଯାଇଛି । କିନ୍ତୁ ଏସବୁ ଘଟଣା ସାଙ୍ଗେ ପ୍ରଫେସର ମୋରିଆର୍ଟିର ସଂପର୍କ ପ୍ରମାଣ କରିବା ଅସମ୍ଭବ । ତେଣୁ ମୁଁ ତୁମ ରୁମ୍‌କୁ ଆସିବାମାତ୍ରେ ଆଗେ ଝରକାଗୁଡ଼ା ବନ୍ଦ କରିଦେଲି, ଆଉ ଗଲାବେଳେ ସାମନା ପଟେ ନ ଯାଇ ପଛପାଖେ ଲୁଚି କରି ଯିବାକୁ କହୁଥିଲି ।''

ମୁଁ ଅନେକ ସମୟରେ ହୋମ୍‌ଙ୍କ ସାହସକୁ ଖୁବ୍ ପ୍ରଶଂସା କରିଛି । କିନ୍ତୁ ଆଜିର ଘଟଣା ପରେ ସେ ଯେମିତି ସାହସ ଧରି ବସିଥିଲେ, ତା' ବଡ଼ ଅଦ୍ଭୁତ ।

କହିଲି, ''ରାତିଟା ତୁମେ ଏଇଠି ରହିଯାଅ ।''

''ନା, ଡାକ୍ତର ! ମୋ ପାଇଁ ତୁମେ ବିପଦରେ ପଡ଼ିବ । ମୁଁ ମୋର ଯୋଜନା ଠିକ୍ କରିସାରିଛି, ଆଉ ସବୁ ଠିକ୍ ଚାଲିବ । ଘଟଣାଟା ଏତେ ଆଗେଇଯାଇଛି ଯେ ମୋ ସାହାଯ୍ୟ ବିନା ମଧ ପୋଲିସ୍ ତାକୁ ଆରେଷ୍ଟ କରିପାରିବ । କିନ୍ତୁ ତାକୁ ଦୋଷୀ ସାବ୍ୟସ୍ତ କରିବା ପାଇଁ ଅଦାଲତରେ ମୋର ଉପସ୍ଥିତି ଦରକାର । ତେଣୁ ପୋଲିସ୍ ତା'ର କାମ କରିବା ଯାଏ ମୁଁ ଏଠୁ ଅନ୍ୟ ଦେଶକୁ ଚାଲିଯିବା ଭଲ ହେବ । ତୁମେ ଯଦି ମୋ ସାଥିରେ ଯାଇପାରନ୍ତ ତେବେ ଖୁବ୍ ଭଲ ହୁଅନ୍ତା ।''

''ମୋର ତ ଏଇଲେ ବିଶେଷ କାମ ନାହିଁ । ତେଣୁ ମୁଁ ଖୁସିରେ ଯାଇପାରିବି ।''

''କାଲି ସକାଳେ ବାହାରିପାରିବ ?''

''ଯଦି ଦରକାର ହୁଏ ।''

''ହଁ, ହଁ, ନିହାତି ଦରକାର । ମୁଁ ଯାହା କହୁଛି ଶୁଣ । ତାକୁ ଅକ୍ଷରେ ଅକ୍ଷରେ ପାଳନ କରିବ । କାରଣ ମନେରଖ, ତୁମେ ମୋ ସାଥିରେ ମିଶି ଇଉରୋପର ସବୁଠୁ ଶକ୍ତିଶାଳୀ ଅପରାଧୀ, ସବୁଠୁ ଚତୁର ସୟତାନ ସାଥିରେ ଖେଳିବାକୁ ଯାଉଛ । ଏଥର ଶୁଣ, ତୁମର ଯାହା ଜିନିଷପତ୍ର ନେବା କଥା ଆଜି ରାତିରେ ଜଣେ ବିଶ୍ୱସ୍ତ ଲୋକ ହାତରେ ଭିକ୍ଟୋରିଆକୁ ପଠାଇଦେବ । ସକାଳେ ଗୋଟେ ଘୋଡ଼ାଗାଡ଼ି ମଗାଇବ । ତୁମ ଲୋକକୁ କହିବ ପ୍ରଥମ ଦ୍ୱିତୀୟ ଦୁଇଟା ଗାଡ଼ି ଛାଡ଼ି ଦେଇ ତୃତୀୟ ଗାଡ଼ିକୁ ଡାକିଆଣିବ । ତୁମେ ସିଧା ସେ ଗାଡ଼ିରେ ବସିଯାଇ ଲୋଥର୍ ଆର୍କେଡ୍‌କୁ ଚାଲିବ । ଗାଡ଼ିବାଲାକୁ ମୁହଁରେ କିଛି ନ କହି, ଯେଉଁଠିକି ଯିବ ସେ ଠିକଣାଟା ଖଣ୍ଡେ କାଗଜରେ ଲେଖି ଦେଇଦେବ । ତାକୁ କହିବ ସେ କାଗଜଖଣ୍ଡ କେଉଁଠି ପକାଇଦେବ ନାହିଁ । ଭଡା ପଇସାଟା ବାହାର କରି ହାତରେ ଧରିଥିବ । ଗାଡ଼ି ଅଟକିବା ମାତ୍ରେ ପଇସା ଦେଇ ଆର୍କେଡ୍ ସେ ପାଖକୁ ଖୁବ୍ ଶୀଘ୍ର ଚାଲିଯିବ । ସେଠି ଯେମିତି ନଅଟା ପନ୍ଦର ମିନିଟ୍ ବେଳେ ପହଞ୍ଚିବ । ଫୁଟ୍‌ପାଥ୍‌କୁ ଲାଗି ଗୋଟେ ଛୋଟ ଘୋଡ଼ାଗାଡ଼ି ଦେଖିବ । ଗାଡ଼ିବାଲା ଗୋଟେ ଲମ୍ବା କଳା କୋଟ୍ ପିନ୍ଧିଥିବ । କଲାର୍‌ରେ ନାଲି ପଟି ଥିବ । ତୁମେ ସେଇଥିରେ ବସିଯିବ ଆଉ ଠିକ୍ ସମୟରେ ଭିକ୍ଟୋରିଆରେ ପହଞ୍ଚିଯିବ ।''

''ତୁମ ସାଥିରେ ମୋର କେଉଁଠି ଦେଖାହେବ ?''

''ଷ୍ଟେସନରେ । ସାମାନା କରୁ ଦ୍ୱିତୀୟ ଫାଷ୍ଟ କ୍ଲାସ ଡବାଟା ଆମ ପାଇଁ ରିଜର୍ଭ ହୋଇଥିବ ।''

''ତା ହେଲେ ସେଇ ଟ୍ରେନ୍ ଡବାଟା ଆମର ସାକ୍ଷାତ ହେବା ଜାଗା ?''

''ହଁ ।''

ରାତିଟା ରହିଯିବା ପାଇଁ ମୁଁ ହୋମ୍‌ସଙ୍କୁ ଯେତେ ଅନୁରୋଧ କଲି ସେ ମୋଟେ ରାଜି ହେଲେ ନାହିଁ । ବୁଝିଲି ତାଙ୍କ ପାଇଁ ମୋ ଉପରେ ବିପଦ ଆସିପାରେ ବୋଲି ସେ ଭାବୁଛନ୍ତି, ତେଣୁ ସେ ଚାଲିଯିବାକୁ ଚାହୁଁଛନ୍ତି । ଆମର ତା'ପରଦିନ ଯୋଜନା ସମ୍ବନ୍ଧରେ ଆଉ କେତେ ପଦ କଥା ତରତରରେ କହିଦେଇ ସେ ମୋ ସାଥିରେ ବଗିଚାକୁ ଆସିଲେ ଓ କାନ୍ଥଡେଇଁ ଗୋଟେ ଘୋଡ଼ାଗାଡ଼ିରେ ବସି ଚାଲିଗଲେ ।

ସକାଳେ ମୁଁ ତାଙ୍କ କଥା ଅକ୍ଷରେ ଅକ୍ଷରେ ପାଳନ କରି କାମ କଲି । ଜଳଖିଆ ଖାଇସାରି ତାଙ୍କ ନିର୍ଦ୍ଦେଶ ମୁତାବକ ଘୋଡ଼ାଗାଡ଼ି ଡାକି ଲୋଥର୍ ଆର୍କେଡ଼ ଚାଲିଲି । ଗାଡ଼ିରୁ ଓହ୍ଲାଇ ଯେତେ ଜୋର୍‌ରେ ପାରେ ଚାଲିଲି । ତାଙ୍କ କହିବା ପରି ଜଣେ ଚାଳକ ଗାଡ଼ି ଧରି ଠିଆ ହୋଇଥିଲା । ମୁଁ ବସିବା ମାତ୍ରେ ସେ ଜୋର୍‌ରେ ଗାଡ଼ି ଛାଡ଼ିଦେଲା । ଭିକ୍ଟୋରିଆ ଷ୍ଟେସନ୍‌ରେ ପହଞ୍ଚିବା ପରେ ମୁଁ ଗାଡ଼ିରୁ ଓହ୍ଲାଇବା ମାତ୍ରେ ସେ ମୋ ଆଡ଼କୁ ନ ଚାହିଁ ଗାଡ଼ି ନେଇ ଖୁବ୍ ଜୋର୍‌ରେ ଚାଲିଗଲା ।

ମୋ ଜିନିଷପତ୍ର ଆଗରୁ ଯାଇ ପହଞ୍ଚିଥିଲା । ଟ୍ରେନ ଡବାଟା ପାଇବାରେ ବି କିଛି ଅସୁବିଧା ହେଲା ନାହିଁ । କାରଣ ସେଇ ଗୋଟାକ ଡବାରେ 'ରିଜର୍ଭ' ବୋଲି ଲେଖାଥିଲା । କିନ୍ତୁ ହୋମ୍‌ସ ସେ ପର୍ଯ୍ୟନ୍ତ ଆସି ନଥାନ୍ତି, ତେଣୁ ମୁଁ ଟିକିଏ ବ୍ୟସ୍ତ ହେଉଥାଏ । ଷ୍ଟେସନ ଘଣ୍ଟାରୁ ଦେଖିଲି ଗାଡ଼ି ଛାଡ଼ିବାକୁ ମୋଟେ ସାତ ମିନିଟ୍ ବାକି । ଯାତ୍ରୀଙ୍କ ଭିତରେ ହୋମ୍‌ସଙ୍କୁ ଖୋଜିବା ପାଇଁ ଆଖି ବୁଲାଇଲି, କିନ୍ତୁ ପାଇଲି ନାହିଁ । ଇଟାଲୀର ଜଣେ ଧର୍ମଯାଜକ ଜଣେ କୁଲିକୁ ଖଣ୍ଡିଆ ଖଣ୍ଡିଆ ଇଂରାଜୀରେ କ'ଣ କହୁଥାନ୍ତି । ତାଙ୍କ ଜିନିଷପତ୍ର ପ୍ୟାରିସ୍‌କୁ ବୁକ୍ ହେବା କଥା । କୁଲିଟା ତାଙ୍କ କଥା ବୁଝିପାରୁନଥାଏ । ମୁଁ ଯାଇ ତାଙ୍କୁ ସାହାଯ୍ୟ କଲି । ସେଥିରେ କେତେ ମିନିଟ୍ କଟିଗଲା । ତା'ପରେ ଆଉ ଥରେ ଚାରିଆଡ଼େ ଆଖିବୁଲାଇଆଣି ମୋ ଡବାକୁ ଫେରିଲି । ଦେଖିଲି କୁଲିଟା ସେ ଇଟାଲୀୟ ଭଦ୍ରଲୋକଙ୍କୁ ଆମ ଡବାରେ ଯିବାପାଇଁ କହୁଛି । ଆମ ଡବାରେ ସେ ଯିବାଟା ଅସୁବିଧାଜନକ ବୋଲି ତାଙ୍କୁ ବୁଝାଇବାକୁ ଚେଷ୍ଟା କରି ବିଫଳ ହେଲି । କାରଣ ଇଂରାଜୀ ଭାଷାରେ ତାଙ୍କର ଜ୍ଞାନ ପରି ଇଟାଲୀ ଭାଷାରେ ମୋର ଜ୍ଞାନ ବି ଖୁବ୍ କମ୍ । ମୁଁ ଆଉ କିଛି ନ କହି ହୋମ୍‌ସଙ୍କୁ ଖୋଜିବା ପାଇଁ ପୁଣି ଚାରିଆଡ଼େ ଆଖି ବୁଲାଇଲି । ମନରେ ଭୟ ଆସିଲା । ଭାବିଲି ରାତିରେ ଆଉ କିଛି ଘଟିଲା କି ? ବଗିର ଦରଜାଗୁଡ଼ା ସେତେବେଳକୁ ବନ୍ଦ ହୋଇଗଲାଣି । ଗାଡ଼ି ଛାଡ଼ିବାକୁ ହୁଇସିଲ୍ ଦେଲା ।

ଏତିକିବେଳେ ଶୁଭିଲା, ''କିହୋ ୱାଟ୍‌ସନ୍ ! ନମସ୍କାରଟାଏ କରିବାକୁ ବି ମନେପଡ଼ିଲା ନାହିଁ ?''

ମୋର ବିସ୍ମୟର ସୀମା ରହିଲା ନାହିଁ । ସେ ବୟସ୍କ ଧର୍ମଯାଜକ ମୋ ଆଡ଼କୁ ଚାହିଁଥାନ୍ତି । ଦେଖିଲି ମୁହୂର୍ତ୍ତକ ଭିତରେ ତାଙ୍କ କପାଳର ରେଖାସବୁ

ଉଭେଇଗଲା । ତାଙ୍କ କୁଚା ଦେହ ସିଧାସଳଖ ହୋଇଗଲା । ଦେଖିଲି ସେ ମୋ ବନ୍ଧୁ ସେର୍‌ଲକ୍ ହୋମ୍‌ସ । କହିଲି, ''ହେ ଭଗବାନ୍ ! ମୁଁ ତ ଚମକି ପଡ଼ିଲି ।'' ଚୁପ୍‌ଚାପ୍ କରି ସେ କହିଲେ, ''ଏବେ ବି ଆମକୁ ଖୁବ୍ ସାବଧାନ ରହିବାକୁ ପଡ଼ିବ । ମୋର ଦୃଢ଼ବିଶ୍ୱାସ ସେମାନେ ଆମ ପଛରେ ଲାଗିଛନ୍ତି । ଏଇ ଦେଖ, ସେଇଠି ମୋରିଆର୍‌ଟି ନିଜେ ।''

ଟ୍ରେନ ଚାଲିବାକୁ ଆରମ୍ଭ କରି ଦେଇଥାଏ । ପଛକୁ ଚାହିଁ ଦେଖିଲି ଜଣେ ଖୁବ୍ ଡେଙ୍ଗା ଲୋକ ପାଗଳ ପରି ଧାଇଁଛି । ହାତଉଠାଇ ହଲାଉଛି, ଟ୍ରେନ୍‌ଟାକୁ ଅଟକାଇବା ଯେମିତି ତା'ର ଉଦ୍ଦେଶ୍ୟ । କିନ୍ତୁ ସେତେବେଳକୁ ଅନେକ ଡେରି ହୋଇଯାଇଥିଲା । ଟ୍ରେନ୍ ଜୋର୍‌ରେ ଚାଲିବା ଆରମ୍ଭ କରି ଦେଲାଣି । ମୁହୂର୍ତ୍ତକ ଭିତରେ ଷ୍ଟେସନ ଛାଡ଼ି ଚାଲିଗଲା । ହସି ହସି ହୋମ୍‌ସ କହିଲେ, ''ଆମର ସବୁପ୍ରକାର ସାବଧାନତା ସତ୍ତ୍ୱେ ବି ଦେଖିଲ ତ ? ଯାହାହେଉ ଆମେ ଖସିଆସିଛେ । ସେ ଉଠି ତାଙ୍କ ଛଦ୍ମବେଶ କୋଟ୍‌ଟା ବାହାର କରି ହ୍ୟାଣ୍ଡବ୍ୟାଗ୍‌ରେ ରଖିଦେଲେ । ସେଇଠୁ କହିଲେ, ''ଆଜି ସକାଳର ଖବରକାଗଜ ଦେଖିଛ ୱାଟ୍‌ସନ୍ ?''

''ନା ।''

''ବେକର୍ ଷ୍ଟ୍ରୀଟ୍ ଘଟଣା ତୁମେ ଶୁଣିନା ?''

''ବେକର ଷ୍ଟ୍ରୀଟ୍ ?''

''ହଁ, ସେମାନେ କାଲି ରାତିରେ ଆମ୍ଭ ରୁମ୍‌ରେ ନିଆଁ ଲଗାଇ ଦେଇଛନ୍ତି । ଅବଶ୍ୟ ବିଶେଷ କିଛି କ୍ଷତି ହୋଇନାହିଁ ।''

''ହେ ପ୍ରଭୁ, ଏହା ତ ସହିହେଉ ନାହିଁ ହୋମ୍‌ସ ।''

''କାଲି ସେ ଲୋକଟା ଆରେଷ୍ଟ ହେଲାପରେ ସେମାନେ ଆଉ ମୋ ପତ୍ତା ପାଇନାହାନ୍ତି । ନଚେତ୍ ମୁଁ ମୋ ରୁମ୍‌କୁ ଫେରିଛି ବୋଲି ସେମାନେ ମୋଟେ ଭାବି ନଥାନ୍ତେ । ତେଣୁ ସେମାନେ ତୁମ ଉପରେ ନଜର ରଖିଛନ୍ତି । ସେଇଥିପାଇଁ ମୋରିଆର୍‌ଟି ଭିକ୍ଟୋରିଆ ଆସିଛି । ଆସିଲାବେଳେ ତୁମେ କିଛି ଭୁଲ୍ କରିନା ବୋଧହୁଏ ?''

''ନା, ତୁମେ ଯାହା ଉପଦେଶ ଦେଇଥିଲ ମୁଁ ଠିକ୍ ସେଇଆ କରିଛି ।''

''ତୁମେ ସେ ଘୋଡ଼ାଗାଡ଼ି ପାଇଲ ?''

''ହଁ, ଗାଡ଼ିବାଲା ଅପେକ୍ଷା କରିଥିଲା ।''

''ସେ ଗାଡ଼ିବାଲାକୁ ଚିହ୍ନି ପାରିଲ ?''

''ନା ।''

''ସେ ମୋ ଭାଇ ମାଇକ୍ରଫଟ । ଏଭଳି ପରିସ୍ଥିତିରେ କୌଣସି ବାହାର ଲୋକକୁ ବିଶ୍ୱାସ କରିବା ଠିକ୍ ନୁହେଁ, କିନ୍ତୁ ଏବେ ମୋରିଆର୍‌ଟି ପାଇଁ କ'ଣ କରାଯିବ ଆମେ ଠିକ୍ କରିବା ।''

''ଏଇଟା ତ ଏକ୍ସପ୍ରେସ୍ ଟ୍ରେନ୍ । ଆମେ ପହଞ୍ଚିଲା ମାତ୍ରେ ଜାହାଜ ପାଇଯିବା । ତେଣୁ ମୁଁ ଭାବୁଛି ଆମେ ତାକୁ ବେଶ୍ ଧପେଇଦେଇ ପାରିଛେ ।''

''ବୁଝିଲ ୱାଟ୍‌ସନ୍ ! ତୁମେ ମୋରିଆର୍‌ଟିକୁ ଜାଣନା । ବୁଦ୍ଧିରେ ସେ ମୋ'ଠୁ କିଛି କମ୍ ନୁହେଁ । ମୁଁ ଯଦି ତା'ପଛରେ ଗୋଡ଼େଇଥାନ୍ତି ତେବେ ଏଇ ସାମାନ୍ୟ ଅସୁବିଧାରେ ମୋଟେ ଦବିଯାଆନ୍ତି ନାହିଁ । ତେଣୁ ସେ କାହିଁକି ହତାଶ ହେବ ?''

''ଆଉ କ'ଣ କରିବ ?''

''ମୁଁ ଯାହା କରିଥାନ୍ତି ।''

''ତୁମେ କ'ଣ କରିଥାନ୍ତ ?''

''ଗୋଟେ ସ୍ପେଶିଆଲ ଟ୍ରେନ୍ ଭଡ଼ା କରିଥାନ୍ତି ।''

''କିନ୍ତୁ ସେତେବେଳକୁ ଡେରି ହୋଇଯାଇଥିବ ।''

''ମୋଟେ ନୁହେଁ । ଏ ଟ୍ରେନ୍‌ଟା କାଣ୍ଟର୍‌ବରୀରେ କିଛି ସମୟ ଅଟକିବ । ତା'ପରେ ଜାହାଜ ପାଖରେ ଅନ୍ତତଃ ପନ୍ଦର ମିନିଟ୍ ଡେରିହେବ । ସେ ଆମକୁ ସେଠି ଧରିନେବ ।''

''ଏମିତିରେ ତ ଆମେ ଦୋଷୀ ବୋଲି ଯେ କେହି ଭାବିବ । ସେଠି ପହଞ୍ଚିଲାମାତ୍ରେ ତାକୁ ଆରେଷ୍ଟ କରାଇବା ।''

''ତା' ହେଲେ ମୋର ତିନିମାସର ପରିଶ୍ରମ ପଣ୍ଡ ହୋଇଯିବ । ଆମେ ବଡ଼ ମାଛଟାକୁ ଧରିନେବା, କିନ୍ତୁ ଛୋଟ ମାଛଗୁଡ଼ା ଜାଲ ଚାରିପାଖେ ଆରାମରେ ବୁଲିବେ । ସୋମବାର ଦିନ ଆମେ କିନ୍ତୁ ସମସ୍ତଙ୍କୁ ଧରିପାରିବା । ନା, ବର୍ତ୍ତମାନ ତାକୁ ଆରେଷ୍ଟ କରିବା ଠିକ୍ ହେବ ନାହିଁ ।''

''ତା'ହେଲେ କ'ଣ କରିବା ?''

''ଆମେ କାଣ୍ଟର୍‌ବରୀରେ ଓହ୍ଲାଇଯିବା ?''

''ତା'ପରେ ?''

''ତା'ପରେ ଆମେ ଏଠିସେଠି ହୋଇ ବୁଲି ବୁଲି ନିଉହାଭେନ୍ ଚାଲିଯିବା । ସେଠୁ ଡିପ୍‌କୁ ଖସିଯିବା । ତା'ପରେ ବି ମୋରିଆର୍‌ଟି ଛାଡ଼ିବା ନାହିଁ । ମୁଁ ଯାହା କରନ୍ତି ସେ ସେଇଆ କରିବ । ସେ ପାରିସ୍ ଯାଇ ଆମ ଜିନିଷପତ୍ର ଦେଖିବ ଆଉ ଡିପୋରେ ଦି'ଦିନ ଅପେକ୍ଷା କରିବ । ଏ ଭିତରେ ଆମେ ଦି'ଟା ଅଖା ବ୍ୟାଗ୍ ଯୋଗାଡ଼ କରିନେବା । ଆମ ଜିନିଷପତ୍ର ସବୁ ଛାଡ଼ିଦେଇ ଲକ୍‌ସନ୍‌ବର୍ଗ ବାଟେ ସୁଇଜରଲାଣ୍ଡ ଚାଲିଯିବା ।''

ମୁଁ ଅନେକ ଆଡ଼େ ବୁଲାବୁଲି କରିଛି । ସାଥିରେ ଜିନିଷପତ୍ର ନଥିଲେ ମୋର ବିଶେଷ କିଛି ଅସୁବିଧା ହେବ ନାହିଁ । କିନ୍ତୁ ଗୋଟେ ଜଘନ୍ୟ ଅପରାଧୀକୁ ଡରି ଏମିତି ଲୁଚି ଲୁଚି ପଳାଇବାଟାକୁ ମୁଁ ପସନ୍ଦ କଲି ନାହିଁ । ବଡ଼ ବିରକ୍ତ ଲାଗିଲା । ହେଲେ ବୁଝିଲି ମୋ ଅପେକ୍ଷା ହୋମ୍‌ସଙ୍କୁ ପରିସ୍ଥିତିଟା ନିଶ୍ଚୟ ଭଲରୂପେ ଜଣା । ତେଣୁ କାଣ୍ଟବରୀରେ ଓହ୍ଲାଇଗଲୁ । ଦେଖିଲୁ ନିଉହାଭେନ୍ ଯିବାପାଇଁ ଟ୍ରେନ୍ ଧରିବାକୁ ଆମକୁ ଆହୁରି ଘଣ୍ଟାଏ ଅପେକ୍ଷା କରିବାକୁ ପଡ଼ିବ ।

ଟ୍ରେନ୍‌ଟା ଆମ ଜିନିଷପତ୍ର ଧରି ଚାଲିଗଲା । ମୁଁ ମନ ଦୁଃଖରେ ସେ ଆଡ଼କୁ ଚାହିଁଥାଏ । ଏତିକିବେଳେ ହୋମ୍‌ସ ମୋ ହାତ ଧରି ଟାଣିଦେଇ ଦୂର ରେଳଲାଇନ୍ ଆଡ଼କୁ ଠାରିଦେଲେ । କହିଲେ, ''ଏଇ ଦେଖିପାରୁଛ ।'' ଦୂରରେ କେଣ୍ଟ ଜଙ୍ଗଲ ଭିତରେ ଧୂଆଁର ସ୍ତମ୍ଭ ଦେଖାଗଲାଣି । ମିନିଟ୍‌କ ପରେ ଗୋଟେ ବଗି ଧରି ଇଞ୍ଜିନ୍‌ଟାଏ ଘର୍ ଘର୍ କରି ଷ୍ଟେସନ ଆଡ଼କୁ ମାଡ଼ିଆସିଲା । ଆମେ ଗୁଡ଼ାଏ ଜିନିଷପତ୍ର ଗଦା ପଛରେ ଲୁଚିଯାଇଛୁ କି ନାହିଁ, ଗାଡ଼ିଟା ଖୁବ୍ ଜୋର୍‌ରେ ସେବାଟେ ଚାଲିଗଲା । ସେଆଡ଼କୁ ଚାହିଁ ହୋମ୍‌ସ କହିଲେ, ''ଏଇ ସେ ଗଲା । ଯାହାହେଉ ଆମ ବନ୍ଧୁଟିର ବୁଦ୍ଧି ଥିଲେ ବି ତା' ସୀମା ଭିତରେ । ମୁଁ ଯାହା ସିଦ୍ଧାନ୍ତ କରିଥାନ୍ତି, ସେ ଯଦି ସେ ସିଦ୍ଧାନ୍ତ କରିପାରିଥାନ୍ତା ତେବେ ଅବସ୍ଥା ଭିନ୍ନ ଆକାର ଧରିଥାନ୍ତା ।''

''ସେ ଆମକୁ ଧରି ପାରିଥିଲେ କ'ଣ କରିଥାନ୍ତା ?''

''ମୋତେ ଖତମ୍ କରିଦେବା ପାଇଁ ସେ ଚେଷ୍ଟା କରିଥାନ୍ତା, ଏଥିରେ ମୋତେ ସନ୍ଦେହ ନାହିଁ । ଏବେ ଦି'ଜଣଙ୍କ ଭିତରେ ଖେଳଟା ଚାଲିବ । ଏଥର

କଥା ହେଲା ଆମେ ଏଠି ଖାଇନେବା କି ନିଉହାଉେନ୍‌ରେ ପହଞ୍ଚିବାଯାଏ ଉପବାସ ରହିବା ।''

ସେଇ ରାତି ଆମେ ବ୍ରସେଲ୍‌ସ ଚାଲିଗଲୁ । ସେଠି ଦି'ଦିନ କଟାଇଲୁ । ତୃତୀୟ ଦିନ ଷ୍ଟ୍ରାସ୍‌ବର୍ଗଯାଏ ଗଲୁ । ସୋମବାର ଦିନ ସକାଳେ ହୋମ୍‌ସ ଲଣ୍ଡନ ପୋଲିସକୁ ଟେଲିଗ୍ରାମ କରିଥିଲେ । ସନ୍ଧ୍ୟାକୁ ତାର ଉତ୍ତର ଆସିଲା । ହୋମ୍‌ସ ସେଟା ଖୋଲି ଦେଖିଲେ । ତା'ପରେ ବିରକ୍ତ ହୋଇ ସେଟା ଫିଙ୍ଗିଦେଲେ । କହିଲେ, ''ମୋର ଏକଥା ଜାଣିବା ଉଚିତ୍ ଥିଲା । ସେ ଖସିଯାଇଛି ।''

''କିଏ ମୋରିଆର୍ଟି ?''

''ହଁ, ତା' ଦଳର ସମସ୍ତଙ୍କୁ ପୋଲିସ୍ ଧରିଛି, କିନ୍ତୁ ସେ ନିଜେ ଖସିଯାଇଛି । ଅବଶ୍ୟ ମୁଁ ଇଂଲଣ୍ଡ ଛାଡ଼ିଆସିବା ପରେ ତା ସାଥିରେ ତାଳ ଦେବାକୁ ଆଉ କେହି ରହିଲା ନାହିଁ । କିନ୍ତୁ ମୁଁ ଭାବିଥିଲି, ପୋଲିସ୍ ପାଇଁ ମୁଁ ସବୁ ଠିକ୍ କରିଦେଇଛି । ମୁଁ ଭାବୁଛି, ତୁମେ ଏଥର ଇଂଲଣ୍ଡକୁ ଫେରିଯାଅ ୱାଟ୍‌ସନ୍ ।''

''କାହିଁକି ?''

''କାରଣ ଏଥର ମୋ ସାଥିରେ ରହିବା ପଦେ ପଦେ ବିପଦପୂର୍ଣ୍ଣ । ଲୋକଟାର ବ୍ୟବସାୟ ପୂରା ଶେଷ ହୋଇଗଲା । ଲଣ୍ଡନକୁ ଫେରିଲେ ତା'କଥା ସରିଯିବ । ସେ ଏଥର ମୋ ଉପରେ ପ୍ରତିଶୋଧ ନେବାପାଇଁ ସବୁ ଶକ୍ତି ଖଟାଇବ । ସେ କଥାବି ସେ ମୋ ମୁହେଁ ମୁହେଁ କହିଦେଇଛି । ତେଣୁ ତୁମେ ଏଥର ଲଣ୍ଡନ ଫେରିଯାଇ ତୁମ ଧନ୍ଦାରେ ଲାଗ ।''

ମୁଁ ତାଙ୍କୁ ଯେତେ ଅନୁରୋଧ କଲେ ବି କିଛି ଲାଭ ହେଲାନାହିଁ । ଆମେ ଅଧଘଣ୍ଟାଏ ଯାଏ ଏ ବିଷୟରେ ଆଲୋଚନା କଲୁ । କିନ୍ତୁ ସେଇ ରାତି ଆମେ ଷ୍ଟ୍ରାସ୍‌ବର୍ଗ ଛାଡ଼ି ବାହାରିଗଲୁ । ସୁବିଧାରେ ସୁବିଧାରେ ଯାଇ ଜେନେଭାରେ ପହଞ୍ଚିଲୁ । ଗୋଟାଏ ସପ୍ତାହ ବେଶ୍ ଆରାମ୍‌ରେ ରୋନ୍ ଉପତ୍ୟକାର ବିଭିନ୍ନ ଜାଗାରେ ବୁଲାବୁଲି କରି, ସେଠୁ ଲିଉକ୍ ଆଡ଼କୁ ଯାଇ ଜେମିପାସ୍ ଦେଇ ମୋରିରିନ୍‌ଜେନ୍‌ରେ ପହଞ୍ଚିଲୁ । ଯାତ୍ରା ବେଶ୍ ଆରାମ୍‌ଦାୟକ ହେଲା । କିନ୍ତୁ ମୁଁ ଭଲଭାବେ ଜାଣିପାରୁଥାଏ, ମୁହୂର୍ତ୍ତକ ପାଇଁ ହୋମ୍‌ସ ତାଙ୍କ ଆଗରେ ଯେଉଁ ବିପଦ ତାକୁ ଭୁଲିପାରୁନଥିଲେ । ଆଲ୍‌ପାଇନ୍‌ର ଛୋଟ ଛୋଟ ଗାଁରେ, କିମ୍ବା ନିର୍ଜନ ପାର୍ବତ୍ୟ ସ୍ଥାନରେ ବି ମୁଁ ଦେଖିଲି ତାଙ୍କ ଆଖି ଚାରିଆଡ଼େ ଘୂରିବୁଲୁଛି ।

ଯେ କୌଣସି ଲୋକକୁ ଦେଖିଲେ ସେ ଭଲରକମ ଚିହ୍ନିବାକୁ ଚେଷ୍ଟା କରୁଛନ୍ତି । ସେଥିରୁ ଜାଣିଲି, ଆମେ ଯୁଆଡ଼େ ଗଲେ ବି ବିପଦ ଆମ ପଛେ ପଛେ ଗୋଡ଼ାଇଛି ।

ମୋର ମନେଅଛି, ଥରେ ଆମେ ଜେମି ପାସ୍ ଉପରେ ଆସୁଥାଉ । ତା' ପାଖରେ ଥିବା ହ୍ରଦ କୂଳରେ ପହଞ୍ଚିଲୁ । ଗଭୀର ଶାନ୍ତ ହ୍ରଦ । ଆମେ ତା'କୂଳେ କୂଳେ ଚାଲିଥାଉ । ଏତିକିବେଳେ ଆମ ପଛରେ ମୁଣ୍ଡିଆ ଉପରୁ ଖଣ୍ଡେ ବଡ଼ ପଥର ଖସି ହ୍ରଦରେ ପଡ଼ିଲା । ହୋମ୍‌ସ ଅବିଳମ୍ବେ ମୁଣ୍ଡିଆ ଉପରକୁ ଉଠିଯାଇ ଖଣ୍ଡେ ବଡ଼ ପଥର ଉପରେ ଠିଆହୋଇ ବଗ ପରି ବେକ ଲମ୍ବେଇ ଚାରିଆଡ଼କୁ ଚାହିଁଗଲେ । ଆମକୁ ବାଟ କଢ଼ାଇ ନେଉଥିବା ଲୋକ ଯେତେ ବୁଝାଇ କହିଲା ଯେ ବସନ୍ତ ସମୟରେ ଏଠାରେ ଏମିତି ପଥର ଖସେ, ତାଙ୍କ ମନ ମୋଟେ ମାନିଲା ନାହିଁ । ସେ କିଛି କହିଲେ ନାହିଁ, ମୋ ଆଡ଼କୁ ଚାହିଁ ଟିକିଏ ହସିଦେଲେ । ତାଙ୍କର ସେ ମଳିନ ହସରୁ ଜାଣିଲି, ତାଙ୍କ ସନ୍ଦେହ ସତରେ ପରିଣତ ହେବା ଯେମିତି ସେ ଦେଖିପାରୁଛନ୍ତି ।

ତଥାପି ସେ କେତେବେଳେ ହେଲେ ହତାଶ ହେଉନଥିଲେ, ବରଂ ତାଙ୍କୁ ଆଗରୁ କେବେ ମୁଁ ଏମିତି ଉତ୍ସାହିତ ଦେଖିନଥିଲି । ବରାବର ସେ କହୁଥାନ୍ତି, ସେ ଯଦି ନିଶ୍ଚିତଭାବେ ଜାଣିବେ ଯେ ସମାଜ ଦୁଷ୍ଟଗ୍ରହ ମୋରିଆର୍‌ଟି ଦାଉରୁ ମୁକ୍ତ ହୋଇଛି ତେବେ ସେ ତାଙ୍କ ଜୀବନର ସମାପ୍ତି ପାଇଁ ଖୁସିରେ ଆଗେଇଯିବେ ।

ସେ କହିଲେ, ''ୱାଟ୍‌ସନ୍, ମୋ ଜୀବନଟା ବ୍ୟର୍ଥ ହୋଇନାହିଁ । ଯଦି ମୋ କାର୍ଯ୍ୟକଳାପ ଆଜି ରାତିରେ ବି ଶେଷହୋଇଯାଏ ତଥାପି ମୁଁ ସନ୍ତୁଷ୍ଟ ହେବି'। ମୋ ଯୋଗୁଁ ଲଣ୍ଡନର ବାୟୁମଣ୍ଡଳ ନିର୍ମଳ ହୋଇପାରିଛି । ଶହ ଶହ କେଶ୍‌ରେ ମୁଁ ମୋ ଶକ୍ତି କେବେ ଭୁଲ୍ ଦିଗରେ ଖଟେଇଛି ବୋଲି ଜାଣେନା । ଏବେ ମୁଁ ଆମ ସମାଜ ଯେଉଁସବୁ ସମସ୍ୟା ସୃଷ୍ଟି କରୁଛି ତାକୁ ଛାଡ଼ି ବିଭିନ୍ନ ପ୍ରାକୃତିକ ସମସ୍ୟାରେ ମୁଣ୍ଡ ଖେଳେଇବାକୁ ମନ କରିଛି । ଯେଉଁଦିନ ମୁଁ ଇଉରୋପର ସବୁଠୁ ଭୟାନକ ଆଉ ଦକ୍ଷ ଅପରାଧୀକୁ ଧରିବି, ସେଇ ଦିନ ତୁମର ଏ ବିବରଣୀ ଲେଖା ଶେଷ ହୋଇଯିବ ।

ମୋର ଆଉ ଯାହା କହିବାର ଅଛି ତାକୁ ମୁଁ ସଂକ୍ଷେପରେ କିନ୍ତୁ ସଠିକ ଭାବେ କହିବି । କହିବାର ଇଚ୍ଛା ନଥିଲେ ବି କର୍ତ୍ତବ୍ୟ ଦୃଷ୍ଟିରୁ କୌଣସିଟା

ବାଦ୍‌ଦେବା ଠିକ୍ ହେବନାହିଁ ବୋଲି ଭାବୁଛି । ମେ ତିନି ତାରିଖରେ ଅମେ ମେରିରବ୍‌ଜେନ୍‌ରେ ପହଞ୍ଚିଲୁ । ଛୋଟ ଜାଗାଟିଏ । ଗୋଟେ ହୋଟେଲରେ ରହିଲୁ । ହୋଟେଲ୍ ମାଲିକ ପିଟର୍ ଷ୍ଟିଲ୍ ଖୁବ୍ ବୁଦ୍ଧିମାନ୍ ଲୋକ, ଆଉ ଭଲ ଇଂରାଜୀ କହିପାରନ୍ତି । ଆଗରୁ ସେ ତିନିବର୍ଷ ଲଣ୍ଡନର ଏକ ହୋଟେଲରେ ଚାକିରି କରୁଥିଲେ । ତାଙ୍କ ଉପଦେଶ ଅନୁସାରେ ଆମେ ଚାରି ତାରିଖ ଉପରବେଳା ପାହାଡ଼ ପାରିହୋଇ ରାତିଟା ରୋଜେନ୍‌ଲାଭଇ ଗାଁରେ କଟାଇବା ଠିକ୍ କରି ବାହାରିପଡ଼ିଲୁ । ପାହାଡ଼ ଉପରେ ରିଚେନ୍‌ବାଚ୍ ନାଳରେ ଗୋଟେ ଜଳପ୍ରପାତ; ପ୍ରାୟ ପାହାଡ଼ର ମଝାମଝି । ସେଟା ପାରି ନ ହୋଇ ଟିକିଏ ବୁଲିଯିବା ପାଇଁ ପିଟର୍ ଆମକୁ କାନେ କାନେ ତାଗିଦ୍ କରିଦେଲେ ।

ପ୍ରକୃତରେ ଜାଗାଟା ବଡ଼ ଭୟଙ୍କର । ବରଫ ତରଳି ପାଣିସୁଅ ଭୀଷଣ ବେଗରେ ମାଡ଼ିଆସି ଗୋଟେ ବିରାଟ ଖାଲରେ ପଡୁଛି । ଜଳକଣା ଉପରକୁ ଉଠି ଗୋଟେ ଜଳନ୍ତା ଘରର ଧୂଆଁପରି ଦିଶୁଛି । ଯେଉଁ ସୁଡ଼ଙ୍ଗ ଦେଇ ନଈଟା ବୋହିଯାଇଛି ସେଟା ଅତି ବିରାଟ ପର୍ବତଘାଟି । ଦି' ପାଖରେ କୋଇଲା ପରି ହୋଇଛି । ତାର ଗହୀର ଅମାପ । ସେଇଠୁ ନଈଟା କରତ ପରି ଦନ୍ତୁରିତ ବାଟଦେଇ ବୋହିଯାଇଛି । ସବୁବେଳେ ଗର୍ଜନ କରୁଥିବା ନୀଳରଙ୍ଗର ପାଣି, ସୁ-ସୁ ଶବ୍ଦ କରି ଉପରକୁ ଛିଟିକି ପଡୁଥିବା ଜଳକଣାର ପରଦା ଦେଖିଲେ, ଯେ କୌଣସି ଲୋକର ମୁଣ୍ଡ ବୁଲାଇଦେବ । ଆମେ ସେ କଳାପଥର କଡ଼ରେ ଠିଆହୋଇ ତଳକୁ ଚାହିଁଲୁ ।

ଚଲାବାଟଟା ଏଇ ଜଳପ୍ରପାତ ପାଖେ ଶେଷ ହୋଇଛି । ତେଣୁ କେହି ସେଠିକି ଗଲେ ତାକୁ ପୁଣି ସେଇ ବାଟଦେଇ ଫେରିବାକୁ ହେବ । ଆମେ ସେଠୁ ଫେରିବାକୁ ବସିଛୁ, ଗୋଟେ ପିଲା ଦୌଡ଼ି ଆସି ପହଞ୍ଚିଲା । ତା'ହାତରେ ଖଣ୍ଡେ ଚିଠି । ସେଥିରେ ଆମେ ଯେଉଁ ହୋଟେଲ ଛାଡ଼ି ଆସିଥିଲୁ ତାର ଚିହ୍ନ ଥିଲା । ଚିଠିଟା ହୋଟେଲ ମାଲିକ ମୋ ପାଖକୁ ଲେଖିଥିଲେ । ସେଥିରେ ଲେଖାଥିଲା ଯେ ଆମେ ହୋଟେଲ ଛାଡ଼ିବାର ଅଳ୍ପ କେତେ ମିନିଟ୍ ପରେ ଜଣେ ଇଂରେଜ ଭଦ୍ରମହିଳା ଆସି ସେଠି ପହଞ୍ଚିଲେ । ସେ କ୍ଷୟକାଶ ରୋଗରେ ବଡ଼ ଦୁର୍ବଳ । ଶୀତଦିନଟା ଡାଭସ୍ ପ୍ଲାଜରେ କଟାଇ ସେ ତାଙ୍କ ବନ୍ଧୁଙ୍କ ପାଖକୁ ଲିଉକର୍ନ ଯାଉଥିଲେ । ହଠାତ୍ ତାଙ୍କର ରକ୍ତସ୍ରାବ ହେଲା । ଜଣାଗଲା ସେ ଆଉ କେତେଘଣ୍ଟା ବଞ୍ଚିପାରିବେ କି ନାହିଁ । କିନ୍ତୁ ଜଣେ ଇଂରେଜ ଡାକ୍ତରଙ୍କୁ

ଦେଖିଲେ ସେ ଯଥେଷ୍ଟ ସ୍ୱାନ୍ତନା ପାଇବେ । ମୁଁ ଯଦି ଦୟାକରି ଫେରନ୍ତି, ଇତ୍ୟାଦି ଇତ୍ୟାଦି । ଶେଷରେ ଷ୍ଟଲର୍ ଲେଖିଛନ୍ତି ମୁଁ ଗଲେ ସେ ବଡ଼ କୃତଜ୍ଞ ହେବେ; କାରଣ କୌଣସି ସୁଇଜରଲାଣ୍ଡ୍ ଡାକ୍ତରଙ୍କୁ ଡାକିବାକୁ ଭଦ୍ରମହିଳା ବିଲକୁଲ୍ ମନା କରିଦେଲେ ।

ଏ ଅନୁରୋଧ ଏଡ଼ି ଦିଆଯାଇ ନ ପାରେ । ନିଜ ଦେଶର ଜଣେ ଭଦ୍ରମହିଳା ଏ ବିଦେଶରେ ମରଣ ମୁହଁରେ । ସେ ବଡ଼ ବିକଳରେ ଅନୁରୋଧ କରିଛନ୍ତି । ତା' ରକ୍ଷା ନ କରିବା ଅସମ୍ଭବ । କିନ୍ତୁ ହୋମ୍ସଙ୍କୁ ଛାଡ଼ିଯିବାକୁ ମୋ ମନରେ ଦ୍ୱିଧାଭାବ ଆସିଲା । ଶେଷରେ ଠିକ୍ ହେଲା ସେ ପିଲା ତାଙ୍କ ସାଥିରେ ରହିବ ଆଉ ବାଟ ବତାଇବ ଏବଂ ମୁଁ ମୋରିରିନ୍‌ବେଜ୍ ଫେରିବି । ହୋମ୍ସ କିଛି ସମୟ ସେ ପ୍ରପାତ ପାଖରେ ରହି ଧୀରେ ଧୀରେ ରୋଜେନ୍‌ଲାଉଇ ଯିବେ । ମୁଁ ସନ୍ଧ୍ୟାରେ ସେଠି ତାଙ୍କୁ ଭେଟିବି । ମୁଁ ଫେରିବାକୁ ବୁଲିଲି । ଦେଖିଲି ହୋମ୍ସ ପଥର କଡ଼ରେ ଠିଆହୋଇ ଛାତି ଉପରେ ହାତ ଛନ୍ଦି ପାଣିକୁ ଚାହିଁ ରହିଛନ୍ତି । ମୋ ଭାଗ୍ୟରେ ସେଇ ତାଙ୍କର ଶେଷଦେଖା ।

ମୁଁ ଗଡ଼ାଣିର ଶେଷରେ ଆସି ପହଞ୍ଚିଲି । ସେଠୁ ପ୍ରପାତଟା ଦେଖାଯିବା ଅସମ୍ଭବ । କିନ୍ତୁ ପାହାଡ଼ ଉପରେ ପ୍ରପାତ ପାଖକୁ ପଡ଼ିଥିବା ଅଙ୍କାବଙ୍କା ରାସ୍ତାଟା ଦେଖାଯାଉଥାଏ । ଏଇ ରାସ୍ତାରେ ଜଣେ ଲୋକ ଖୁବ୍ ଶୀଘ୍ର ଯାଉଥିବାର ଦେଖିଲି । ଶାଗୁଆ ବୁଦା ଭିତରୁ ତା କଳା ଦେହଟା ସଫା ଦିଶୁଥାଏ । ଲୋକଟା ସବୁ ବଳ ଖଟେଇ ଖୁବ୍ ଜୋର୍‌ରେ ଚାଲୁଥିବାର ଲକ୍ଷ୍ୟ କଲି । କିନ୍ତୁ ମୁଁ ମୋ କାମରେ ଚାଲିଆସିଲି । ଲୋକଟା କଥା ମନରୁ ଭୁଲି ହୋଇଗଲା ।

ମୋରିରିନ୍‌ବେଜ୍‌ରେ ପହଞ୍ଚିବାକୁ ଘଣ୍ଟାକରୁ ଟିକିଏ ବେଶି ଲାଗିଲା । ଷ୍ଟିଲର୍ ତାଙ୍କ ହୋଟେଲ୍ ଆଗରେ ଠିଆ ହୋଇଥିଲେ । ତରତର ହୋଇ ତାଙ୍କ ପାଖକୁ ଯାଇ କହିଲି, ''ଭଦ୍ରମହିଳାଙ୍କ ଅବସ୍ଥା ବେଶି ଖରାପ ହୋଇନାହିଁ ବୋଧହୁଏ ?'' ସେ ବିସ୍ମିତ ହୋଇ ମୋ ମୁହଁକୁ ଚାହିଁ ରହିଲେ । ତାଙ୍କ ମୁହଁର ଭାବ ଦେଖି ମୋ ଛାତି ଥରିଉଠିଲା । ଚିଠିଖଣ୍ଡ ପକେଟ୍‌ରୁ ବାହାର କରି ପଚାରିଲି, ''ତୁମେ ଏ ଚିଠିଟା ଲେଖି ନଥିଲ ? ତୁମ ହୋଟେଲରେ ଜଣେ ଇଂରେଜ ଭଦ୍ରମହିଳା ବେମାର ପଡ଼ିନାହାନ୍ତି ?''

''ମୋଟେ ନୁହେଁ । କିନ୍ତୁ ଏଥିରେ ତ ହୋଟେଲ୍ ଚିହ୍ନ ଅଛି । ହଁ, ବୁଝିଲି । ଆପଣମାନେ ଯିବା ପରେ ଯେଉଁ ଡେଙ୍ଗା ଇଂରେଜ ଭଦ୍ରଲୋକ ଆସି ପହଞ୍ଚିଲେ

ସେ ନିଶ୍ଚୟ ଏଟା ଲେଖିଥିବେ । ସେ କହିଲେ... ।''

କିନ୍ତୁ ହୋଟେଲ ମାଲିକଙ୍କ କଥା ଶୁଣିବାକୁ ମୁଁ ଆଉ ରହିପାରିଲି ନାହିଁ । ମନରେ ଭାରି ଭୟ ଆସିଲା । ଗାଁ ଦାଣ୍ଡେ ଦାଣ୍ଡେ ଆଖିବୁଜା ପାହାଡ଼ ତଳକୁ ଦୌଡ଼ିଲି । ଅଇଲାବେଳକୁ ମୋତେ ଘଣ୍ଟେ ସମୟ ଲାଗିଥିଲା । କିନ୍ତୁ ଏବେ ଯେତେ ଚେଷ୍ଟା କଲେ ବି ରିଚେନ୍‌ବାଚ୍ ପ୍ରପାତ ପାଖରେ ପହଞ୍ଚିବାକୁ ଦି'ଘଣ୍ଟାରୁ ବେଶୀ ସମୟ ଲାଗିଲା । ଯେଉଁ ପଥର ପାଖରେ ହୋମ୍‌ଙ୍କୁ ଛାଡ଼ି ଯାଇଥିଲି ତାଙ୍କ ବାଡ଼ି ସେଠି ଡେରାହୋଇ ଥୁଆ ହୋଇଥାଏ; କିନ୍ତୁ ତାଙ୍କର କିଛି ଚିହ୍ନବର୍ଣ୍ଣ ନଥିଲା । ମୁଁ ଖୁବ୍ ପାଟିକରି ଡାକ ପକାଇଲି; କିନ୍ତୁ ସବୁ ବୃଥା । ଚାରିକଡ଼ର ପାହାଡ଼ ଦେହରୁ ମୋ କଥାର ପ୍ରତିଧ୍ୱନି କେବଳ ଫେରିଆସିଲା ।

ତାଙ୍କ ବାଡ଼ିଖଣ୍ଡ ଦେଖି ହିଁ ମୋ ମନରେ ବେଶି ଭୟ ଓ ଦୁଃଖ ଆସିଲା । ସେ ତା'ହେଲେ ରୋସେନ୍‌ଲାଉଇ ଯାଇନାହାନ୍ତି - ସେ ସେଇ ଜାଗାରେ ରହିଛନ୍ତି । ଗୋଟେ ପାଖେ ପଥର ଆଉ ଗୋଟେ ପାଖେ ଗହୀରିଆ ପ୍ରପାତ । ଏଇଠି ତାଙ୍କ ଶତ୍ରୁ ଆସି ତାଙ୍କୁ ଧରିନେଇଛି । ସେ ଟୋକାଟା ବି କୁଆଡ଼େ ଚାଲିଯାଇଛି । ମୋରିଆର୍‌ଟି ବୋଧେ ତାକୁ ପଇସାପତ୍ର ଦେଇ ହାତ କରିଥିଲା । ସେ ଆସିବା ପରେ ଟୋକାଟା ପଳେଇଛି ।

ତା'ପରେ କ'ଣ ହେଲା ? ସେକଥା କିଏ କହିବ ?

ଭୟରେ ମୁଁ କାଠ ପାଲଟିଗଲି । ଦି'ମିନିଟ୍‌ଯାଏ ଠିଆହୋଇ ଟିକିଏ ଦମ୍ଭ ଧରିଲି । ଘଟଣାଟା କ'ଣ ହୋଇଥାଇପାରେ ଜାଣିବା ପାଇଁ ମୁଁ ହୋମ୍‌ସଙ୍କ ପଦ୍ଧତି ଅନୁସରଣ କଲି । ଖୁବ୍ ସହଜରେ ଘଟଣାଟା ଜାଣିହୋଇଗଲା । ଆମେ କଥାବାର୍ତ୍ତା ହେଲାବେଳେ ଯେଉଁଠି ଠିଆ ହୋଇଥିଲୁ ସେଟା ବାଟର ଶେଷମୁଣ୍ଡ ନୁହେଁ । ତାଙ୍କ ବାଡ଼ିରୁ ଆମେ ଯେଉଁଠି ଠିଆହୋଇଥିଲୁ ସେ ଜାଗାଟା ଜାଣିହେଲା । ସେଠା କଳାମାଟିଟା ସବୁବେଳେ ପାଣିଛିଟିକା ପଡ଼ି କଅଁଳ ଆଉ ଓଦା । ଚଢ଼େଇଟେ ସେଠି ଚାଲିଗଲେ ବି ତା ପାଦଚିହ୍ନ ରହିଯିବ । ସେଠି ଦି'ଧାଡ଼ି ପାଦଚିହ୍ନ ପରିଷ୍କାର ଦେଖାଯାଉଥିଲା । ପାଦଚିହ୍ନଗୁଡ଼ା ଦୂରକୁ ଦୂରକୁ ଚାଲିଯାଇଛି; କିନ୍ତୁ ଫେରିବା ଚିହ୍ନ ନାହିଁ । ବାଟର ଶେଷମୁଣ୍ଡଠୁ ଅଳ୍ପ ଦୂରରେ ମାଟିଟା ଘାଣ୍ଟିଚକଟି ହୋଇ କାଦୁଅ ହୋଇଯାଇଛି । କଡ଼ରେ ଥିବା ଛୋଟ ଛୋଟ ବୁଦାସବୁ ଭାଙ୍ଗିଯାଇଛି । ମୁଁ ମୁହଁ ମାଡ଼ି ଶୋଇ ତଳକୁ ଚାହିଁଲି । ପାଣିଛିଟିକାଗୁଡ଼ା ମୋ ମୁହଁରେ ପଡୁଥାଏ । ସେତେବେଳକୁ ବି ଅନ୍ଧାର

ହୋଇଯାଇଥାଏ । ତଳେ କେବଳ କଳାପାଣି ଦେଖାଯାଉଥାଏ । ମୁଁ ପାଟିକରି ଡାକିଲି । କିନ୍ତୁ ଜଳପ୍ରପାତର ଶବ୍ଦ କେବଳ ମୋ କାନରେ ବାଜିଲା ।

କିନ୍ତୁ ମୋ ବନ୍ଧୁଙ୍କଠାରୁ ଶେଷବାର୍ତ୍ତା କେତେପଦ ଶୁଣିବା ମୋ ଭାଗ୍ୟରେ ଥିଲା । କହିଛି, ତାଙ୍କ ବାଡ଼ିଖଣ୍ଡ ଗୋଟେ ପଥରକୁ ଡେରାହୋଇ ଥୁଆ ହୋଇଥିଲା । ଏଇ ପଥର ଉପରେ କିଛି ଗୋଟେ ଚକ୍‌ଚକ୍ କରୁଥିବାର ଦେଖାଗଲା । ହାତ ବଢ଼ାଇ ସେଟା ଆଣିଲି । ଦେଖିଲି ସେଟା ହୋମ୍‌ସଙ୍କ ରୁପାର ସିଗାରେଟ୍ ଡବା । ସେଟା ଉଠେଇ ଆଣିଲାବେଳେ ତା ତଳୁ ଖଣ୍ଡେ କାଗଜ ତଳକୁ ଉଡ଼ିଆସିଲା । ତାକୁ ଖୋଲି ଦେଖିଲି ହୋମ୍‌ସଙ୍କ ନୋଟ୍ ଖାତାର କାଗଜରେ ମୋ ପାଖକୁ ଲେଖାଯାଇଛି । ତାଙ୍କର ସବୁ ଲେଖାପରି ଏଟା ବି ବେଶ୍ ପରିଷ୍କାର । ସତେ ଯେମିତି ସେ ତାଙ୍କ ପଢ଼ାଘରେ ବସି ଏ ଚିଠିଟା ଲେଖିଛନ୍ତି ।

ସେ ଲେଖିଥିଲେ, ''ପ୍ରିୟ ୱାଟ୍‌ସନ୍, ମିଷ୍ଟର ମୋରିଆର୍‌ଟି ଭଦ୍ରତା ରଖି କିଛି ସମୟ ଦେବାରୁ ମୁଁ ଏ ଦି'ପଦ ଲେଖୁଛି । ଆମ ଭିତରେ ଯେଉଁ ପ୍ରଶ୍ନ ଅଛି ତା'ର ଆଲୋଚନା ପାଇଁ ସେ ଅପେକ୍ଷା କରିଛନ୍ତି । ସେ ଯେଉଁ ଉପାୟରେ ଇଂରେଜ ପୋଲିସ ଆଖିରେ ଧୂଳି ଦେଇ ଆସିଛନ୍ତି ଆଉ ଯେଉଁ ଉପାୟରେ ଆମର ଗତିବିଧି ବିଷୟରେ ସବୁ ଜାଣିପାରିଛନ୍ତି, ସେକଥା ମୋ ଆଗରେ କହିଛନ୍ତି । ସେଥିରୁ ଜଣିଲି, ତାଙ୍କ ଶକ୍ତି ଉପରେ ମୋର ଯେଉଁ ଉଚ୍ଚଧାରଣା ଥିଲା ତା ସଂପୂର୍ଣ୍ଣ ଯଥାର୍ଥ । ମୁଁ ଆନନ୍ଦିତ ଯେ ସମାଜକୁ ତାଙ୍କ ଦାଉରୁ ମୁଁ ରକ୍ଷା କରିପାରିବି । ଯଦିଓ ମୁଁ ଜାଣୁଛି ଯେ ସେଥିପାଇଁ ଯେଉଁ କ୍ଷତି ହେବ ତାହା ମୋ ବନ୍ଧୁମାନଙ୍କୁ, ବିଶେଷତଃ ତୁମକୁ ଘୋର ଦୁଃଖଦେବ । ମୁଁ ଆଗରୁ ତୁମକୁ କହିଥିଲି ଯେ ମୋ ଜୀବନ ଏକ ଘଡ଼ିସନ୍ଧି ମୁହୂର୍ତ୍ତରେ ଆସି ପହଞ୍ଚିଛି । ଯା'ଠୁ ଆଉ କିଛି ଭଲ ପରିଣତି ମୁଁ ଆଶା କରୁନଥିଲି । ଏବେ ତୁମକୁ ସତକଥା କହୁଛି । ମେରିଗିନ୍‌ଜେନ୍‌ରୁ ଯେଉଁ ଚିଠିଟା ଆସିଥିଲା, ସେଟା ଗୋଟେ ଫନ୍ଦି ବୋଲି ମୁଁ ଜାଣିଥିଲି । ତଥାପି ମୁଁ ତୁମକୁ ଯିବାପାଇଁ କହିଲି । କାରଣ ଏଭଳି ଗୋଟେ ପରିସ୍ଥିତି ଦର୍କାର ହୋଇଥିଲା । ମୋରିଆର୍‌ଟି ଦଳର ଲୋକମାନଙ୍କୁ ଦଣ୍ଡ ଦେବାପାଇଁ ଯାହାସବୁ କାଗଜପତ୍ର ଦରକାର ସେସବୁ ଗୋଟେ ଶାଗୁଆ ଲଫାଫାରେ ଅଛି । ତା'ଉପରେ 'ମୋରିଆର୍‌ଟି' ବୋଲି ଲେଖାଅଛି । ସେ ଲଫାଫା ସ୍କଟ୍‌ଲାଣ୍ଡ ୟାର୍ଡ଼ର ଅଫିସ୍ ରୁମ୍‌ର ଉତ୍ତର-ପୂର୍ବ କଣ ଆଲମିରା ତଳେ

ଅଛି । ଏକଥା ଇନିସ୍‌ପେକ୍ଟର ପାଟ୍ରେସନ୍‌ଙ୍କୁ କହିଦେବ । ଇଂଲଣ୍ଡ ଛାଡ଼ିବା ପୂର୍ବରୁ ମୁଁ ମୋର ସବୁ ସମ୍ପତ୍ତିର ବ୍ୟବସ୍ଥା କରି ତାକୁଂ ମୋ ଭାଇ ମାଇକ୍ରଫ୍‌ଟ୍‌କୁ ଦେଇଦେଇଛି । ମିସେସ୍ ୱାଟ୍‌ସନ୍‌ଙ୍କୁ ମୋର ଆନ୍ତରିକ ଅଭିନନ୍ଦନ ଜଣାଇଦେବ । ମୋର ଶୁଭେଚ୍ଛା ନେବ ।

ତୁମର ପ୍ରିୟବନ୍ଧୁ

ସେରଲକ୍ ହୋମ୍‌ସ''

ଆଉ ଯାହା ରହିଲା, କେତେ ପଦ କଥାରେ କହିହେବ । ବିଶେଷଜ୍ଞମାନେ ଯାଇ ସେ ଜାଗାକୁ ପରୀକ୍ଷା କରି ଦେଖିଲେ । ସେଠି ଦି'ଜଣଙ୍କ ଭିତରେ ଧସ୍ତାଧସ୍ତି ହୋଇଛି । ଫଳ ଯାହା ହବାର କଥା ସେଇଆ ହେଲା । ଦି'ଜଣଯାକ ହାତ ଧରାଧରି ହୋଇ ପ୍ରପାତଗର୍ଭକୁ ଗଡ଼ି ପଡ଼ିଛନ୍ତି । ମୃତ ଦେହ ଦି'ଟା ବାହାର କରିବା ପାଇଁ କୌଣସି ଚେଷ୍ଟା କରିବା ସେ ଜାଗାରେ ଅସମ୍ଭବ । ସେଇଠି, ସେଇ ଭୟଙ୍କର ଅତଳ ଗହ୍ୱର ଭିତରେ ଚିରଦିନ ପାଇଁ ସବୁଠୁ ଭୟଙ୍କର ଅପରାଧୀ ଆଉ ଆଇନ-ଶୃଙ୍ଖଳାର ରକ୍ଷାକର୍ତ୍ତା ପୃଥିବୀର ସବୁଠୁ ବଡ଼ ଅପରାଧବିଜ୍ଞାନୀ ଲୁଚି ରହିଲେ । ଚିଠି ଆଣି ଆସିଥିବା ସେ ଟୋକାଟାର କିଛି ପତ୍ତା ମିଳିଲା ନାହିଁ । ଏଥିରେ ସନ୍ଦେହ ନାହିଁ ଯେ ମୋରିଆର୍ଟିର ଅସଂଖ୍ୟ ଏଜେଣ୍ଟମାନଙ୍କ ଭିତରୁ ସେ ବି ଜଣେ । ହୋମ୍‌ସ ଯେଉଁସବୁ ପ୍ରମାଣ ରଖିଦେଇଯାଇଥିଲେ ତା'ରି ବଳରେ ସେ ଦଳର ସମସ୍ତେ ଧରାପଡ଼ି କଠିନ ଦଣ୍ଡ ପାଇଲେ । ବିଚାରବେଳେ ତାଙ୍କ ଦଳପତି ବିରୁଦ୍ଧରେ କିଛି ପ୍ରମାଣ ମିଳିଲା ନାହିଁ । ସେ ଯାହାହେଉ, ପୃଥିବୀର ସବୁଠୁ ବୁଦ୍ଧିମାନ୍, ସବୁଠୁ ଭଲ ମୋ ବନ୍ଧୁ ସେରଲକ୍ ହୋମ୍‌ସ ସବୁଦିନ ପାଇଁ ମୋ ହୃଦୟ ଭିତରେ ଏକ ଉଚ୍ଚସ୍ଥାନ ଅଧିକାର କରି ରହିବେ ।

